# କଥା-ବୀଥିକା

ସଂକଳୟିତା

ଅଧ୍ୟାପକ ସୀତାରାମ ମହାପାତ୍ର
ଅଧ୍ୟାପକ ସୁଦର୍ଶନ ଆଚାର୍ଯ୍ୟ

ପ୍ରକାଶକ

ଜୀବନ୍ତ ଦର୍ପଣ

ବ୍ରହ୍ମପୁର : ଉତ୍କଳ

ମୂଲ୍ୟ ଟ ୨-୦୦

Digitized by srujanika@gmail.com

# ସୂଚୀପତ୍ର





*Digitized by srujanika@gmail.com*

# ଗାରୁଡ଼ି ମନ୍ତ୍ର

ଏହିଟା ହେଲା ତିରିଶ ବୃତିଶ ବର୍ଷ ତଳର କଥା । କଟକରେ କଲେଜ ନୂଆ ବସିଛି, ଏଫ୍. ଏ. କ୍ଲାସ ପର୍ଯ୍ୟନ୍ତ ପଢ଼ା ହୁଏ । ଉପର କ୍ଲାସରେ ଗୋଟି ପନ୍ଦର ଷୋଳ ଛାତ୍ର । ସେଥିମଧ୍ୟରୁ ଆଠ ଦଶ ଗୋଟି ମଫସଲିଆ, ସହର ଭିତରେ ନାନା ଜାଗାରେ ବସା କରି ରହିଛନ୍ତି । ସେତେବେଳେ କଲେଜରେ ବୋର୍ଡିଂ ନ ଥିଲା । କଟକ ଚୌଧୁରୀ ବଜାର ଭିତରେ ଗୋଟିଏ ସାଦା ଦୋମହଲା କୋଠାରେ ବସା—ଛାତ୍ରଟିର ନାମ ମଦନମୋହନ । ନାମଟି ପରି ପିଲାଟି ଦେଖିବାକୁ ମଧ୍ୟ ମଦନମୋହନ, ବୟସ ଜଣାଯାଏ ଷୋଳ ସତର ଭିତରେ । ବସାରେ ପୂଜାହାରୀ, ଗୋଟିଏ ଭଣ୍ଡାରୀ, ଆଉ ପାଆନ୍ତି ଏହି ତିନୋଟି ଲୋକ । ହେଲେ କ'ଣ, କେହି ଘର କାନ୍ଥେଇ, କେହି ବୋଝ ମୁଣ୍ଡେଇ, କେହି ଚିଠି ହାତରେ ରୋଜନା ଦୁଇ ତିନି ଜଣ ଧୂଳିଗୋଡ଼ିଆ ଲୋକ ଯା'ଆସ କରନ୍ତି । ଧନେ ବୋଲି ଉପୁରି ଲୋକର ଛୁଟିଣ ନାହିଁ । ଜିନିଷପତ୍ର ଧରି ଉପୁରିଲୋକଙ୍କ ଯା'ଆସ କରିବାର ଦେଖି ବସା ଆଖପାଖ ଦୋକାନିଏ ବୁଝିଲେଣି, ଏହି ବାବୁ ପିଲାଟି ମଫସଲର କୌଣସି ଜମିଦାର ଘରର ପୁଅ ହେବ । ଢେର ଧନ ପାଖରେ ଥିବା ଲୋକର ପରିଚୟ ଜାଣିବା ପାଇଁ ଲୋକଙ୍କର ସହଜରେ ଇଚ୍ଛା ହୁଏ—ତା'ଉପରେ ପୁଣି ବଡ଼ଲୋକ ହେଲେ ଲୋକେ ଆଗେ ପରିଚୟ ଖୋଜିବସନ୍ତି । ପାଖଲୋକେ ସମସ୍ତେ ଜାଣିଗଲେଣି ପିଲାଟି ବଡ଼ନଈ ପରଗନାର

Digitized by srujanika@gmail.com

ଶାଳପାଳ ତାଲୁକର ଜମିଦାର ଗୋଲୋକଲୋଚନ ପଟ୍ଟନାୟକଙ୍କ ପୁଅ । ଏହା ମଧ୍ୟ ଜଣାଗଲାଣି, ଜମିଦାରଙ୍କର ଏହି ଗୋଟିଏ ବୋଲି ପୁଅ । ପୃଥିବୀରେ ଯେତେ ପ୍ରକାର ହତଭାଗ୍ୟ ଲୋକ ଅଛନ୍ତି, ସେମାନଙ୍କର ଯଦି ଶ୍ରେଣୀବିଭାଗ କରାଯାଏ, ଏକପୁଅ ବାପ ମା ନିଶ୍ଚୟ ପ୍ରଥମ ଶ୍ରେଣୀର ପ୍ରଥମରେ ପଡ଼ିବେ—ଏକଥା ଲେଖକ ତମ୍ବା ତୁଳସୀ ଶାଳଗ୍ରାମ ଛୁଇଁ ଦୃଢ଼ରୂପେ ବୋଲିବାକୁ ପ୍ରସ୍ତୁତ ଅଛି । ପୁଅ ଖାଇ ନାହିଁ, ବାପ ମା'ଙ୍କର ଉପାସ—ପୁଅଟିର ବେରାମ, ଆଖିରେ ନିଦ ନାହିଁ । ପେଟରେ ଭୋକ ନାହିଁ । ଧନରତ୍ନ ବିଛଣା ପାଖରେ ଜଗି ବସିଛନ୍ତି । ପୁଅଟି କାହିଁରେ ସୁଖରେ ରହିବ, ଧନ ରତ୍ନ ଭାବନା । ଆପଣାର ଛିନସିଆଁ ଲୁଗା, ପୁଅ ସକାଶେ ଯଥା କଣା ଲାଗିଛି । ଦେହର ରକ୍ତ ପରି ଟଙ୍କାଗୁଡ଼ିକ ପୁଅପାଇଁ ଅକାରଣ ବା ସକାରଣ ପାଣି ପରି ଖରଚ କରିବାକୁ ଟିକିଏ ହେଲେ ହାଲିଆ ହୋଇ ପଡ଼ିବେ ନାହିଁ । ପରକାଳ ଗତିପାଇଁ ପ୍ରଭୁଙ୍କ ନାମ ଗୁଣିବାକୁ ବି ବେଳ ମିଳେ ନାହିଁ । ବାପ ମା'ଙ୍କର ଯେତେ କିଛି ଧର୍ମକାର୍ଯ୍ୟ, ସବୁଗୁଡ଼ିକ ପୁଅର ମଙ୍ଗଳ କାମନାରେ । ମଦନ କଟକରେ ପଢ଼ୁଛି, ବାପ ମା'ଙ୍କ ପିଣ୍ଡରେ ଅଛି ପ୍ରାଣ—ମନ ରହିଛି ପୁଅ ପାଖରେ । ରୋଜନା ପୁଅ ଦେହପା'ର ମଙ୍ଗଳ ବାର୍ତ୍ତା ନ ପାଇଲେ ସାଆନ୍ତାଣୀ ଅଥୟ ହୋଇପଡ଼ନ୍ତି । କଟକ ସହର ଦୋକାନରେ ଗୃଉଳଗୁଡ଼ାକ ପାଣିପଣା, ବାଲିଗୋଡ଼ ମିଶା, ମଳୁଖିଆ । ସାଆନ୍ତାଣୀ ଉଆସ ମଧ୍ୟରେ ପୋଇଲିମାନଙ୍କୁ ଲଗାଇ ଉଆଖିଆ ସରୁ ଉରଆ କୁଟାଇ ବାହୁଙ୍ଗୀ ବେଠିଆରେ କଟକ ପଠାଇ ଦେଲେ । ତୋଟାରୁ ପାଚିଲା କଦଳୀ କାନ୍ଦିଏ ଅଇଲା । ମା ମନ କେତେକେ ବୁଝେ, ଆଗରୁ ହାଣ୍ଡିଏ ଫୁଲବଡ଼ି ପରା ହୋଇଥିଲା—ସବୁ କଟକକୁ ଯେନି ଯା । ଆଜି ପଠାଇବାକୁ କିଛି ନାହିଁ । ଭୁକ୍ତା ହାତରେ ହେଲେ ଜଣେ

Digitized by srujanika@gmail.com

ନଗଦୀ ପାଇକ ଧାଇଁଯାଇ ପୁଅକୁ ଦେଖି ଆସୁ । ସେଇଜନା ଏହିପରି ଗ୍ଲୁଛନ୍ତି ।

ଜମିଦାର ଗୋଲପଲୋଚନ ପଟ୍ଟନାୟକେ ଆପେ ପାଠୁଆ ନ ହେଲେ କ'ଣ ହେଲା, ପାଠର ମର୍ଯ୍ୟାଦା ବୁଝନ୍ତି; ଏଥି ସକାଶେ ସେ ଆଖି କାନ ବୁଜି ଇଂରାଜୀ ପାଠ ପଢ଼ିବା ସକାଶେ ପୁଅକୁ ବିଦେଶକୁ ପଠାଇ ଦେଇଛନ୍ତି । ମଦନ ଉତ୍କଳଣିକା କଲେଜର ସବା ଉପର କ୍ଲାସରେ ପଢ଼େ । କଲେଜ ପଢ଼ା ବହି ଗୁଡ଼ା ବାହାର ବହି ଢେର ପଢ଼ି ଗଲାଣି । ଭେଣ୍ଡିଆମାନେ ଉପନ୍ୟାସ ପଢ଼ିବାକୁ ସୁଖ ମଣନ୍ତି । ମଦନ ବି ଢେର ଗୁଡ଼ାଏ ଉପନ୍ୟାସ ପଢ଼ିଗଲାଣି । ମଦନ ଟିକିଏ ଖୁବ୍ ଗମ୍ଭୀର, ମନମରା ଲୋକ । ହେଲେ କଣ,

"ଯୋଗୀକୁ ରୋଗୀକୁ ଭୋଗୀକୁ ନଶାନ
ଆଁଖସେ ଜାନ ଅଉର ଆଁଖସେ ପଇଚ୍ଛାନ ।"

ପାଟି ଫିଟାଇ ନ କହୁ, ମଣିଷ ମନର କଥା ଆଖିରୁ ଧରା ପଡ଼େ । ଦେଖାଗଲାଣି, ମଦନ ଉପନ୍ୟାସ ବହି ଖଣ୍ଡ ହାତରେ ଧରି ଏକଧ୍ୟାନରେ ଭକ୍ ଭକ୍ କରି ଉପରକୁ ଅନାଇ ଢେର ବେଳଯାଏଁ କ'ଣ ଭାବେ । ସଞ୍ଜବେଳେ ନଈକୂଳରେ ବସି ଏହିପରି ଭାବୁଥିବାର ଦେଖାଯାଏ । ମଦନ ସାଙ୍ଗ ପଢ଼ୁଆ ହୃଦପୁର ବନ୍ଧୁ ଗୋକୁଳ ବାବୁ ମଦନର ଏହିପରି ଭାବ ଦେଖି ପଚାରିଲାଣି, "ମଦନ ! ଏପରି ବସି କ'ଣ ଗୋଟାଏ ଭାବୁ ରେ ?" ବନ୍ଧୁ ପାଖରେ ମନର କଥା ଫେଇ କହିଲେ ମନ ଟିକିଏ ହାଲୁକା ହୁଏ । ହବେ ମଦନ ହଠାତ୍ କହି ପକାଇଲା, "ଗୋକୁଳ ! ଏହି ଉପନ୍ୟାସ ଖଣ୍ଡ ପଢ଼ିଲ ! ନାୟକ ନାୟିକାଙ୍କର କେମନ୍ତ ମଧୁର ପ୍ରଣୟ ପଢ଼ିଲ !" ଗୋକୁଳ ହସି ହସି କହିଲେ, "ଓହୋ ! ବୁଝିଛି, ତୁମେ ଏହିପରି ନାୟିକାଟିଏ ଖୋଜୁଛ ପରା ?" ଦୁଇ ବନ୍ଧୁ ଖୁବ୍ ହସାହସି ହେଲେ ।

Digitized by srujanika@gmail.com

ମନୁଷ୍ୟ କୌଣସି କାର୍ଯ୍ୟରେ ଲାଗିପଡ଼ିବା ଆଗେ ତାହା ମନରେ ତିନୋଟି ଅବସ୍ଥା ଘଟେ । ପ୍ରଥମେ ଅନୁଭୂତି, ଦ୍ୱିତୀୟ ଭାବନା, ତୃତୀୟ ଇଚ୍ଛା । ଗୀତାକାର ମଧ୍ୟ ସେହିପରି କଥାଟାଏ କହିଛନ୍ତି, "ଧ୍ୟାୟତୋ ବିଷୟାନ୍ ପୁଂସଃ ସଙ୍ଗସ୍ତେଷୂପଜାୟତେ ।" ତରୁଣ ବୟସରେ ତରଳ ମନ ପ୍ରଣୟ ଆଡ଼କୁ ସହଜରେ ଟଳି ପଡ଼େ । ମଦନ ଉପନ୍ୟାସରେ ନାୟକ ନାୟିକାଙ୍କ ପ୍ରଣୟ କଥା ପଢ଼ି ପଢ଼ି ସ୍ଥିର କଲଣି, ଏହିପରି କନ୍ୟାଟିଏ ପାଇଲେ ବିଭା ହେବ । ସଙ୍ଗେ ସଙ୍ଗେ ମନରେ ପଡ଼ିଗଲା,

"କୁଞ୍ଜ ପରି ନଇଁ ନଇଁ ଗୋଡ଼ ଚିପି ଗମନା,
ମୁଖଚନ୍ଦ୍ର ଆବୃତ, ହାତେ ଲମ୍ବ ଓଢ଼ଣା,
ଚୁ ଚୁ—କଥା କହେ ହାଉଡ଼ୀ ସମାନା,
ଘରକୋଣବାସିନୀ, ବିରସବଦନା,
ମାର୍ଜାର ଶିଶୁ ପରି ମୂଦ୍ରିତନେତ୍ରା,
ଚେଲହରିଦ୍ରାବଲେପିତଗାତ୍ରା ।"

ହାୟ ହାୟ ! ଦରଫୁଟିଲା ପଦ୍ମଟିକୁ ବୋଉରଝାଞ୍ଜିରେ ଘୋଡ଼ାଇ ପକାନ୍ତି ! ଦେଶର କି କୁପ୍ରଥା ! କି କୁସଂସ୍କାର ! ଛି ଛି ଛି ! ଏପରି କାଠ କୁଣ୍ଢେଇଟାକୁ କିଏ ବାହା ହେବ ମ ! ମୁଁ ନ ହେବି ନାହିଁ ପଛକେ ବାହା !

ସ୍ଥିର ଛ ମାସ ଉତ୍ତାରେ ଦିନେ ଫୁଲସଞ୍ଜ ସମୟ, ମୁଣ୍ଡରେ ଗାମୁଛା ଖଣ୍ଡେ ପାଗପରି ଗୁଡ଼ିଆ, ଅଣ୍ଟାରେ ପାଚ୍ଛୋଡ଼ଖଣ୍ଡେ ଭିଡ଼ା, ଆଣ୍ଠୁ ଯାଏ ଧୂଳି, ଅଳ୍ପ ନଇଁ ନଇଁ ଗୋଟିଏ ବୁଢ଼ା ବାଡ଼ି ଖଣ୍ଡିଏ ଠୁକ୍ ଠୁକ୍ କରି ବସାଘରର ଦୋମହଲା ଉପରକୁ ଉଠିଗଲେ । ହାତରେ ଡାଳଟିଏ ଧରି ପିଠିରେ ସାନ ବୋକଚିଟିଏ ପକାଇ ପଛରେ ଜଣେ ଭଣ୍ଡାରି ଚାଲିଛି । ମଦନ ବାବୁ ତାଙ୍କୁ ଦେଖି

Digitized by srujanika@gmail.com

ଚମକି ପଡ଼ିଲାପରି ହୋଇ ପଚାରିଲେ, "ଇଏ ଅଜା ! ଇଏ ଅଜା ! ଆପଣ କୁଆଡ଼େ ଅଇଲେ ? ଆପଣ କୁଆଡ଼େ ଅଇଲେ ? ଆରେ ଅଜାଙ୍କୁ ଗୋଡ଼ ଧୋଇବାକୁ ପାଣି ଦେ ରେ । ଧାଇଁ ଯା, ବଜାରରୁ ଜଳଖିଆ କିଣି ଆଣ ରେ ।"

ବୃଦ୍ଧ—ହେଉ ହେଉ, ସବୁ ହେବ, ତୁ ଏଡ଼େ ବ୍ୟସ୍ତ ହୋଇ ପଡ଼ ନା ।

ନବାଗତ ଏହି ବୁଢ଼ାଟିକୁ ଚିହ୍ନାଇଦେବା ଦରକାର, ନୋହିଲେ ପାଠକ କଷ୍ଟ ଛନ୍ଦି ହେବେ । ବୃଦ୍ଧ ନନ୍ଦନ ଦାସେ ସାଆନ୍ତାଣୀଙ୍କ ମାମୁଁ, ମଦନର ଅଜା । ଦାସେ ସାଆନ୍ତଙ୍କ ଘର ଗୁମ୍ଫକରଣ । ହେଲେ କଣ ହେଲା ମଦନ ଠିକ୍ ଅଜାପରି ଭକ୍ତି କରେ, ଅଜା ବି ମୁନିବ ପୁଅ ବୋଲି ତୁମେ, ଆପଣ ନ କହି ତୁ—ଆରେ ବୋଲି ଡାକନ୍ତି, ସେହିପରି ସ୍ନେହ କରନ୍ତି । ଦାସେ ଗୋଡ଼ ହାତ ଧୋଇ ଟିକିଏ ଅଳ୍ପ ଗଡ଼ାଗଡ଼ି କରି ଖଣ୍ଡେ ଆସନରେ ବସିଛନ୍ତି । ବହୁଦିନ ଆସନ୍ତି ନାହିଁ, ଆଜି କାହିଁକି ଅଇଲେ ? ମଦନର ମନ ଲାଗିଛି । ଯାଇ ପାଖରେ ବସିପଡ଼ି ପଚାରିଲା, "ଅଜା କାହିଁକି ଆସିଛନ୍ତି, କଣ ଲୋଡ଼ା ବୋଲନ୍ତୁ, ଉଆସରେ ସବୁ ମଙ୍ଗଳ ତ ?"

ବୃଦ୍ଧ—ଉଆସରେ ସବୁ ମଙ୍ଗଳ, ସମସ୍ତଙ୍କ ଦେହପା' ଭଲ, ଖୁବ୍ ମଙ୍ଗଳ କଥାଟାଏ କହିବାକୁ ଦଶ କୋଶ ବାଟ ଧାଇଁ ଆସିଛି । ବୋଲିବ, ତୁ କାହିଁକି ଏପରି ଗୁଣିଆ ହେଉଛୁ ?

ମଦନ ଟିକିଏ ଲାଜ ପାଇଲାପରି ହେଲା, ମାତ୍ର କପରି ଝିଅ କରି କଥା ମନକୁ ବାଜିଗଲା, ଖୁବ୍ ଭଲ, ମଙ୍ଗଳ କଥା ! ଏଣେ ଚଞ୍ଚଳ ତ କହୁ ନାହାନ୍ତି, କଥା କଣ ? ସଫା ବୁଝି ନ ପାରିଲେ କଣ ହେଲା, ମାତ୍ର ମନଟା କେମିତିକା ଗୁଡ଼େଇ ପୁଡ଼େଇ ହେଉଛି,

Digitized by srujanika@gmail.com

ଉଦାସ ଉଦାସ ପରି ଜଣା ଯାଉଛି । ଉଠି ଯାଇ ପଢ଼ିବାକୁ ବସିଗଲା । ହେଲେ ପଢ଼ାରେ ମନ ଲାଗୁନାହିଁ । ଏ ବହି ଖଣ୍ଡ, ସେ ବହି ଖଣ୍ଡ ଭୁଛା ଓଲଟ ପାଲଟ କରୁଛି ।

× × ×

ଅଜା ନାତି ଦୁହେଁ ଖାଇ ବସିଛନ୍ତି । ଅଜା ଟିକଏ ଗଳା ଖଙ୍କାରି ଦେଇ କଥା ଆରମ୍ଭ କଲେ, "ବୁଝିଲୁ ମଦନ, ବାପାସାଆନ୍ତ ମୋତେ ପଠାଇଛନ୍ତି, ତୋତେ ଘେନ ଗାଁକୁ ଯିବ । ତୋ'ର ବାହାଘର ।" ମଦନ ଅଜା ମୁହଁକୁ ଏକଧ୍ୟାନରେ ଚାହିଁ କଥା ଶୁଣୁଥିଲେ, 'ବାହାଘର' ଏହି କଥାଟା ଶୁଣି ତାଙ୍କ ମୁଣ୍ଡ ବୁଲାଇ ଦେଲାଣି । ହାତରୁ ଭାତଗୁଣ୍ଡାଏ କେତେବେଳେ ଖସିପଡ଼ିଲା ତାଙ୍କୁ ଜଣାନାହିଁ । ଅଜା ସାଆନ୍ତ ଭାତ ଥାଳରେ ହାତ ଦେଇ ତଳକୁ ଅନାଇ କଥା ହାଙ୍କି ଯାଉଛନ୍ତି—ମଦନ କାନରେ କଥାଗୁଡ଼ାକ ପଶୁଛି କି ନାହିଁ, ତାଙ୍କୁ ଜଣା । ମଙ୍ଗଳପୁର ଜମିଦାର ରାମରାମ ଦାସଙ୍କ କନ୍ୟାଟିର ଏହି ପନ୍ଦର ବରଷ ଚଳିଛି । ଖୁବ୍ ଡୌଲ, ଗୋଟିଏ କାଠିରେ ଗଢ଼ା, ଚମ୍ପାଫୁଲ ପରି ରଙ୍ଗ, ଖୁବ୍ ପାଠୋଈ, ଛନ୍ଦକୁ ଛନ୍ଦ ଗୀତ ମୁହେଁ ମୁହେଁ ହାଙ୍କିଯାଏ । ଦେଖ ମଦନ, ମୁଁ ଢେର ଆଡ଼େ ଲଗି ଲଗି ତୋ ପାଇଁ ଏହି କନ୍ୟାଟି ଠିକ୍ କରିଛି । କନ୍ୟାକୁ ଯେତେବେଳେ ଦେଖିବୁ, ଅଜା ସତୁଆ କି ମିଛୁଆ, ଜାଣିବୁ । ମୋ ପାଇଁ ବକସିସ୍ ଦରକାର । ତୋ ଆଡ଼ୁ ଅଲଗା ଗୋଟିଏ ବରମପୁରା ପାଟପଥା ପାଇବ । କଣ କହୁଛୁ ମଦନ ? ମଦନର ଜ୍ଞାନ ଅଛି ଯେ କଥାର ଉତ୍ତର ଦେବ ! ବୋଧକରୁଁ, ମନ ମଧ୍ୟରେ କହୁଛି, 'ପଥା ! ନା ତୋ ମୁଣ୍ଡ ବକସିସ୍ ପାଇବୁ ।' ମଦନ ରାତସାରା ବଛଣାରେ ପଡ଼ି ଭାବୁଛି, ଆଖିରେ ନିଦ ନାହିଁ । ଆଜକାଲିକା ଇଂରାଜୀ ପାଠୁଆ ଭେଣ୍ଡିଆଙ୍କ ମଧ୍ୟରୁ ଗୋଟାଏ ଗୋଟାଏ

Digitized by srujanika@gmail.com

ଅଦ୍ଦିନଅାଁ କଖାରୁ ବାହାରି ପଡ଼ନ୍ତି—ତାଙ୍କ ଜାଣିବାରେ ବାପଟା ମୂର୍ଖ, କିଛି ଜାଣେ ନାହିଁ, ସେମାନେ ଆପେ ଔପନ୍ୟାସିକ କନ୍ୟା ବାଛି ବିଭା ହେବେ । କନ୍ୟାର ରୂପ ଗୁଣ ହେନ ବାପ ସଙ୍ଗରେ ବୋଲିବୋଲି କରିବସନ୍ତି । ମଦନ ସେପରି ଶ୍ରେଣୀରୁ ବାହାର । ଆଜଯାଏଁ ବାପର କୌଣସି କଥାରେ ଜବାବ ଦେଇ ନାହିଁ । ସେ ଗୋଟିଏ କଥା ଧରିଛି, ବାପା ପରି ମଙ୍ଗଳକାମୀ ତାହାର ଆଉ ଜଗତରେ କେହି ନାହିଁ । ଅନ୍ୟ ସ୍ୱାର୍ଥପର ଲୋକଗୁଡ଼ାଙ୍କ ପାଖରୁ କିଛି ଦୂରରେ ଥାଏ । ମାତ୍ର ମଦନ ବିଭାଘର କଥା ଶୁଣି ଟିକିଏ ଲାଜ ପାଇଲାଣି, ଅଜା ମୁହଁକୁ ଅନାଇ ପାରୁନାହିଁ, ବାପକୁ ଜବାବ ଦେବ କଣ ? ଢେର ଭାବି ଭାବି ଗୋଟାଏ କଥା ତାହା ମନରେ ପଡ଼ିଗଲା—ମୋତେ ଭଲ କରି ଇଂରାଜୀ ପଢ଼ାଇବା ପାଇଁ ବାପା ଢେର ଥର କହିଛନ୍ତି । ମଦନର ମନ ଟିକିଏ ଖୁସି ହେଲା, ଏହି କଥାଟିକୁ ସଙ୍ଗାଳି କରି ଶୋଇପଡ଼ିଲା ।

ତହିଁ ଆରଦିନ ସକାଳେ ଅଜା ନାତି ଦୁହେଁ ଖାଇ ବସିଛନ୍ତି । ବୁଢ଼ା ମନରେ ବିଚାରିଲା, ପିଲାଟା ତ କିଛି ଜବାବ ଦେଲା ନାହିଁ—କଥା କଣ ? ନାତିର ମନ ବୁଝିବା ପାଇଁ ଅଜା କହିବସିଲେ, "ବୁଝିଲୁ ରେ ନାତି, ଏପରି ପରମା ସୁନ୍ଦରୀ, ଏପରି ପାଠୋଇ ପାରିବୀ, ଏପରି ଭଲ ଘର ଭାଗ୍ୟକୁ ମିଳେ । ହେବ ନାହିଁ କିଆଁ—ବାପସାଆନ୍ତ ଯେପରି ପୁଣ୍ୟବନ୍ତ, ତୁ ଯେପରି ପିତୃଭକ୍ତ ଧାର୍ମିକ ପିଲା, ତୋତେ ଏ କନ୍ୟା ମିଳିବ ନାହିଁ ତ ଆଉ କାହାକୁ ମିଳିବ ? ଦିନେ ହେଲେ ବାପ ସାଆନ୍ତଙ୍କ କୌଣସି କଥାରେ ନା-ପଦ ତୋ ମୁହଁରୁ କାଢ଼ିନାହୁଁ । ଏଥିଲାଗି ଦେଶଯାକ ତୋର ପ୍ରଶଂସା । ତୁ ପିଲାଟା ହେଲେ କଣ ହେଲା, ସବୁ ଶାସ୍ତ୍ର ବୁଝୁ, ଜାଣୁ । ଶାସ୍ତ୍ରରେ ଲେଖା ଅଛି, 'ବାପ ଯେଉଁ ପୁଅ ପ୍ରତି ସନ୍ତୁଷ୍ଟ, ସବୁ ଦେବତାଠାରୁ

Digitized by srujanika@gmail.com

ସେ ବର ପାଏ ।' ଆଜି ଗୋଟାଏ କଥା ବୁଝିଥା, ଏପରି ପାତ୍ରୀ ହାତରୁ ଥରେ ବାହାରି ଗଲେ ଆଉ କେବେଁ ମିଳେ ନାହିଁ । ବାପା ସେଥିପାଇଁ ଚଞ୍ଚଳ ହୋଇ ପଡ଼ିଛନ୍ତି । ସ୍ୱୀକୃତ ହୋଇ ଗଲିଣି । ଆସନ୍ତା ମକର ସତର ଦିନ ଶୁକ୍ଳ ଦଶମୀକୁ ଲଗ୍ନ, ତେଣିକି ଲଗ୍ନ ନାହିଁ । ଆଉ ତୋର ଯୋଡ଼ା ବପୁସ ପଡ଼ିବ, ବର୍ଷେ ଶୁଭ ବନ୍ଦ । ଯା, ସ୍କୁଲମାଷ୍ଟରଙ୍କୁ କହି ବୋଲି ତୋ ପୋଥିପତ୍ର ଦେଇ ଚାଲିଆ । କାଲି ସକାଳେ ଚାଲିଯିବା । ଆଉ ଦିନ ନାହିଁ, ମଝିରେ ମାସ ଯୋଡ଼ାଏ !" ମଦନ ବାବୁ ମୁଣ୍ଡପୋତି ଧୀରେ ଧୀରେ କହିଲେ, "ବାପା କହିଛନ୍ତି ମୁଁ ଭଲକରି ଇଂରାଜୀ ପାଠଟା ପଢ଼ିବି । ବି.ଏ. ପାଶ୍‌ଯାଏ ପଢ଼ିବାକୁ ମୋର ବି ଇଚ୍ଛା । ବାହା ଫା ହେଲେ ମୋର ଆଉ ପାଠ ହେବ ନାହିଁ ।"

ଅଜା—ହଁ ହଁ, ସେ କଥା ବି ଉଆସରେ ପଡ଼ିଥିଲା । ବାପା କହିଛନ୍ତି, ତୋର ଆଉ ପଢ଼ିବାର ଦରକାର ନାହିଁ । ଆଉ ତୋର ବିଏ ଫିଏ ପାସ ଫାସ ଦରକାର କ'ଣ ରେ ? ତୁ କ'ଣ ସରକାର ଘରେ ଚାକିରି କରିବୁ !

ମଦନ ବାବୁଙ୍କ ସଙ୍କୋଚ ସରିଲା । ଫୁଁ କରି ନିଶ୍ୱାସଟାଏ ପକାଇ ଚୁପ୍ ହୋଇ ବସିଲେ । ଅଜା କଥା ଶୁଣି ଜୋକ ମୁହଁରେ ଲୁଣ ଦେଲା ପରି ଚୁପ୍ ହୋଇ ବସିଲେ ।

× × ×

ଜମିଦାରଙ୍କ ଉଆସର ଚାରିଟା ପୁର—ବାହାଦେଉଠାରୁ ସାନ ସାଆନ୍ତଙ୍କ ପୁର ଅଲଗା ହୋଇ ଯାଇଛି । ମଝି ଦୁଆରଟି କିଳିଦେଲେ ଦୁଇ ପୁର ସଂପୂର୍ଣ୍ଣରୂପେ ଅଲଗା ହୋଇଯାଏ । ମଦନ ବାବୁଙ୍କ ବିଭା କାଲି ପରି ଚାରିମାସ ହୋଇଗଲାଣି । ଦିନ ରାତି

Digitized by srujanika@gmail.com

ପୁର ମଧ୍ୟକୁ ଯା ଆସ କରିବାକୁ ମଦନ ବାବୁଙ୍କର ଇଚ୍ଛା; କିନ୍ତୁ ବୃଦ୍ଧ ପହରକ ଆଗରୁ ପୁର ମଧ୍ୟକୁ ଯାଇ ପାରନ୍ତି ନାହିଁ । ବାହାର କଚେରୀ ଘର ଲଗା ଆପଣା ବୈଠକଖାନାରେ ବସି ପଢ଼ାପଢ଼ି କରୁଥାନ୍ତି । ମଦନମୋହନଟି ବଡ଼ ଲାଜକୁଳିଆ ପିଲା । ଦିନବେଳେ ଭିତର ଉଆସକୁ ଯିବା ସମୟରେ ପୋଇଲି ପରିବାରୀ ଗୁଡ଼ାକ କେହି ହସନ୍ତୁ ନ ହସନ୍ତୁ, ସେ ମନରେ କରନ୍ତି ଯେମନ୍ତ ପୋଇଲି ଗୁଡ଼ାକ ହସୁଛନ୍ତି । ଆଜି ଆଜି ଜମିଦାରଙ୍କ ଘର ପରି ଏହାଙ୍କ ଉଆସରେ ଅକର୍ମା ଅସଭ୍ୟ ପୋଇଲିଗୁଡ଼ାଏ ବି ଢେର । ସେ ଗୁଡ଼ାଙ୍କର ଆଉ ପାଇଟି କ'ଣ ?

ଏ ତ ଗଳ୍ପ ଗୋଟାଏ କଥା । ବଡ଼ କଥାଟା ଏହି ଯେ, ପଦ୍ମିଟା ବୋହୂ ପାଖେ ପାଖେ ଜୋକପରି ଲଗି ରହିଛି । ପଦ୍ମିଟା ପୋଇଲି ହେଲେ କ'ଣ ହେଲା, ତାହାର ଗୁଣ ଢେର । ଗାଁରେ ତାହାର ନାମ ଡାକ ଅଛି । ଗାଁ ମଧ୍ୟରେ କୌଣସି ସାଆନ୍ତଙ୍କ ଝିଅ ବାହାଘର, ଦଶ ପନ୍ଦର ଦିନ ଆଗରୁ ମା ସାଆନ୍ତାଣୀ ପଦ୍ମିକୁ ଡାକନେଇ ଝିଅ ପାଖରେ ରଖି ଦିଅନ୍ତି । ଶାଶୁଘରକୁ ଯିବାବେଳେ ଝିଅ କାହାକୁ ଧରି କି କଥା କହି କପରି କାନ୍ଦିବ—ଶାଶୁଘରେ କେତେ ଓଢ଼ଣା ପକାଇ କପରି ନଇଁ ନଇଁ ଚାଲିବ, କପରି ଚୁ— ଚୁ କଥା କହିବ, ଏସବୁ ସଦ୍‌ଗୁଣ ଶିଖାଇବାକୁ ପଦ୍ମିକୁ କେହି ବଳିଯିବ ନାହିଁ । ନିତାନ୍ତ ପରିତାପର ବିଷୟ, ଶିକ୍ଷାର, ବିଶେଷରେ ସ୍ତ୍ରୀଶିକ୍ଷାର ବହୁଳ ପ୍ରଚାର ଯୋଗୁଁ ପଦ୍ମି ଶ୍ରେଣୀ ଗୁଣବନ୍ତିମାନଙ୍କ ଦାନାପାଣି ପ୍ରାୟ ଉଠିଗଲାଣି । ଝିଅ ବିଭା ହୋଇ ଆସିବା ବେଳେ ମଙ୍ଗଳପୁର ତାଲୁକର ଜମିଦାରଣୀ ପଦ୍ମିକାନରେ ଆଖି ପୋଛି ପକାଇ କହିଲେ, "ଶୁଣ ପଦ୍ମି, ମନ ତୋତେ ଲାଗିଲା । ବୁଝି ସାବଧାନ ! ଝିଅର ଢଙ୍ଗଢାଙ୍ଗ ଲାଜ ସରମ କଥାରେ ଯେମନ୍ତ

Digitized by srujanika@gmail.com

କେହି ତୁଣ୍ଡ ନ ଫିଟାଏ, ଆମ ବଂଶକୁ ନିନ୍ଦା ବୋଲଣା ନ ଆସେ !"
ପଧି ଖୁବ୍ ଗର୍ବରେ ମୁରକି ହସଟାଏ ହସି କହିଲା, "ଆଜ୍ଞା ମଣିମା !
ଏକଥା କ'ଣ ଆଜି ପଧିକୁ ଶିଖାଇ ଦେବେ ?"

କନ୍ୟାଟିର ନାମ ମୋହିନୀ । ରୂପରେ, ଗୁଣରେ ବି ସେହିପରି ମୋହିନୀ । ମଦନ ବାବୁଙ୍କ ମନକୁ ବଡ଼ ଲାଗିଲାଣି । ଖାଲି ଇଚ୍ଛା, ବୋହୂଟିକୁ ଭଲକରି ପଢ଼ାଇବେ, ସବୁବେଳେ ଦୁଇ ଜଣ ବସି କଥାଭାଷା ହେବେ, ସଞ୍ଜବେଳେ ଟୋଟାରେ ବୁଲିବେ— ଉପାୟ କ'ଣ ? ପଧିଟା ତ ସାଙ୍ଗେ ସାଙ୍ଗେ ଲାଗି ରହିଛି । କ'ଣ ମନ୍ତ୍ର ପଢ଼ାଉଛି, ସେହି ମୂର୍ଖ ବୋହୂଟା ବି ଆଖି ଫିଟାଉ ନାହିଁ କି କଥା କହୁ ନାହିଁ । ଦିନେ ମଦନ ବାବୁ ଆପଣା ପଢ଼ାଘରେ ବସି କ'ଣ ଭାବୁଥିଲେ, ହଠାତ୍ ଖୁସିଟାଏ ହୋଇ ପାଟିକରି କହି ପକାଇଲେ, ବେଶ୍ ଉପାୟ ମନରେ ପଡ଼ୁଛି, ବେଶ୍ କଥା— ବେଶ୍ କଥା !

ମଦନ ବାବୁ ପ୍ରତିଦିନ ଘଣ୍ଟା ପନ୍ଦରକ ସରକି ଉଆସ ଭିତରକୁ ଆସୁଥିଲେ । ଏଣିକି ଢେର ଥର ମଠ ହୋଇ ଗଲାଣି, ଦିନେ ଦିନେ ଦେଡ଼ ପହର ବି ଗଡ଼ିଯାଏ । ଦିନେ ପଧି ପଚାରିଲା, "ହୋଇ ଲୋ ଶୁନ୍ଦି ! ସାଆନ୍ତ ମଣିମାଙ୍କର ଉଆସ ଭିତରକୁ ବିଜେ ହେବାକୁ ଦିନେ ଦିନେ ଏତେ ମଠ ହୁଏ କିଁଆ" । ବଡ଼ ଉଆସରେ ଢେର ଗୁଡ଼ାଏ ପୋଇଲା, ମାତ୍ର ସାନ ସାଆନ୍ତଙ୍କ ଉଆସକୁ କେହି ଯାଆନ୍ତି ନାହିଁ । ପୁଅ ଗୋଳମାଳକୁ ଭଲ ପାଏ ନାହିଁ । ଏଥିପାଇଁ ମା ସାଆନ୍ତାଣୀଙ୍କର ମନା, କେହି ପୋଇଲା ସାନ ସାଆନ୍ତଙ୍କ ଉଆସ ଭିତରକୁ ଯିବେ ନାହିଁ । କେବଳ ଶୁନ୍ଦୀ ପୋଇଲୀକୁ ନମୋଦ କରି ଦେଇଛନ୍ତି—ସବୁବେଳେ ବୋହୂ ପାଖରେ ଥାଏ । ପାଠ ଘରେ ସାନ ସାଆନ୍ତ ଓ ଶୁନ୍ଦୀ ନବେଳାରେ ବସି ଢେର ବେଳଯାଏ

Digitized by srujanika@gmail.com

କଣ ଫୁସର-ଫାସର ହେଉଥିବାର କେତେ ଥର ଦେଖା ଗଲାଣି । ପଦ୍ମ ପଚାରିବାରୁ ଶୁକ୍ରୀ କହିଲା, "ତୁ ଶୁଣି ନାହୁଁ କ ଲୋ ପଦ୍ମ ଅପା ! ସାଆନ୍ତ ମଣିମା ଗାରୁଡ଼ି ମନ୍ତ୍ର ଫୁଙ୍କିବାକୁ ଯାନ୍ତି ପରା !"

ପଦ୍ମ—ଗାରୁଡ଼ିମନ୍ତ୍ର କ'ଣ ଲୋ ?

ଶୁକ୍ରୀ—କ'ଣ କି, ଏ ଦେଶରେ ଏହି ଖରାଦିନଆ ତଣା-ନାଗ ଢେର ବାହାରି ମଣିଷଙ୍କୁ ଦଂଶି ଦିଅନ୍ତି । ସାଆନ୍ତଙ୍କୁ ଗାରୁଡ଼ି ମନ୍ତ୍ର ଜଣା, ଫୁଙ୍କି ଦେଲେ ବିଷ ଉଡ଼ିଯାଏ । ପଣକୁ ପଣ ରୋଗୀ ଭଲ ହୋଇ ଗଲେଣି । ଆଜି କ'ଣ କହିବି ପଦ୍ମ ଅପା, ଏହି ପାଖ ଗାଁ ମଚ୍ଛପୁରରେ ପୁଞ୍ଜାଏ ବୋହୂ ଠକ୍ ଠକ୍ କରି ମରିଗଲେ । କେଡ଼େ ସୁନ୍ଦର ବୋହୂଗୁଡ଼ିକ, ଆହା ! ଆହା !

ପଦ୍ମ—ହିଁ ଲୋ ଶୁକ୍ରି ! ସେଗୁଡ଼ାକ ସାନ ସାଆନ୍ତ ମଣିମାଙ୍କୁ କିଁଆ ବାଉନ ଦେଲେ ନାହିଁ ?

ଶୁକ୍ରୀ—ହିଁ, ସାନ ସାଆନ୍ତ ବିଜେ କରିଥିଲେ, ଢେର ଫୁଙ୍କାଫୁଙ୍କି କଲେ, ହେଲେ କ'ଣ ହେଲା, ବୋହୂଗୁଡ଼ାକ ଆପଣା ଦୋଷରୁ ମଲେ ମ ! କଥା କ'ଣ କି, ସାଆନ୍ତ ଆଗେ ମନ୍ତ୍ରା ପାଣିରେ କାଠିମରା ରୋଗୀର ମୁହଁ ଧୋଇ ଦିଅନ୍ତି, ଆଖି ଜୁଡ଼ା ପିଟାଇ ଦିଅନ୍ତି । ଆଉ ଗାରୁଡ଼ି ମନ୍ତ୍ର ଡାକିବାବେଳେ ରୋଗୀ ମୁହଁରୁ ଲୁଗା କାଢ଼ି ସାଆନ୍ତଙ୍କ ମୁହଁକୁ ଚାହିଁ ରହିବା ବିଧି । ବୋହୂଗୁଡ଼ାକ ମନ୍ତ୍ର ପଢ଼ିବାବେଳେ ଯେମିତି ମୁହଁ ଢାଙ୍କି ପକାଇଲେ, ଠକ୍ ଠକ୍ କରି ଢଳି ପଡ଼ିଲେ ।

ପଦ୍ମ—ଆହା ! ପାଖରେ କ'ଣ କେହି ପୁରୁଖା ମାଇପେ ନ ଥିଲେ ? ବୋହୂ ମୁହଁ ଢାଙ୍କିବାବେଳେ ତା ହାତ ଧରି ପକାଇଲେ ନାହିଁ କିଁଆ ? ଜୀବନ ବଡ଼ ନା ଲାଜ ବଡ଼ ? 'ଆପଣାକଥାକୁ ଇଲାଜ

Digitized by srujanika@gmail.com

କଁ୍ୟା’ ! ହଁ ଲେ ଶୁନ୍ଧି, କାଠିମରା ରୋଗୀର ମୁଣ୍ଡବାଳ ଫିଟାଇ ଦଉନ୍ତି, ମୁଁ ଜାଣେ ।

ଶୁନ୍ଧୀ—ପଦ୍ମା ଅପା, ତୁ ତ ରୋଜନା ସଞ୍ଜ ବାଦେ ମାଡ଼ ବଢ଼ାଇବା ଲାଗି ବୋହୂ ସାଆନ୍ତାଣୀଙ୍କୁ ତୋଟାଆଡ଼େ ନେଇଯାଉ । ହାତରେ ଗୋଟାଏ ଆଲୁଅ ନେଇଗଲେ ଭଲ ହୁଅନ୍ତା ପରା !

ପଦ୍ମା—କ’ଣ କହିଲୁ ଲୋ ଶୁନ୍ଧି, କ’ଣ କହିଲୁ ! ଏଡ଼େ ମହତ ଘର ପୋଇଲୀଟା ହୋଇ କ’ଣ କଥାଟା ମୁହଁରେ ଧରିଲୁ ? ଦେଶରେ ମୁଲକରେ ଗୋଟାଏ ନିନ୍ଦା ଚହଳ ପଡ଼ିଯିବ ଯେ, ହାଟୁଆ ଘର ଝିଅଟା ପରି ମଶାଲ୍ ଜାଳି ବାଡ଼ିଆଡ଼େ ଯାଏ । ମା ସାଆନ୍ତାଣୀଙ୍କ କାନରେ ବାଜିଗଲେ କ’ଣ ମୋ ଚୂଟି ପିଠି ରହିବ ? ଆମ ଉଆସରେ ତ ବୋଡ଼କୁ ବୋଡ଼ ପୋଇଲୀ— ମା ସାଆନ୍ତାଣୀ ବାଛି ବାଛି ମୋତେ ସଙ୍ଗରେ ଦେଲେ କଁ୍ୟା ? ଆଲୋ ପଦ୍ମା ଯେବେ ସଙ୍ଗରେ ଅଛି, ଆମ ଜେମାଙ୍କର ଡର କ’ଣ ?

ସଞ୍ଜ ଗଡ଼ି ଗଲାଣି । ଘର ଭିତରେ ସବୁ ଅନ୍ଧାର । ବୋହୂଟି ଓଢ଼ଣା ପକାଇ ତୋଟା ଭିତରୁ ଧୀରେ ଧୀରେ ଚାଲିଛି । ପଦ୍ମା ବାହାଟି ଧରି ଚଲାଇ ଆଣୁଛି । ତୋଟାଦୁଆର ଦୁଆରବନ୍ଧ ଡେଇଁ ଯେମିତି ଘର ଭିତରକୁ ପଶିବେ, କବାଟକଣରୁ ଦେଢ଼ହାତ ଲମ୍ବ ସାପଟାଏ ବାହାରି ବୋହୂ ଆଉ ପଦ୍ମା ଗୋଡ଼ପାଖ ବାଟେ ହଳହଳ କରି ଚାଲିଗଲା । ପଦ୍ମା ତ ବୋହୂଟାକୁ ପେଲିଦେଇ ‘ବୋପା ଲୋ’ ବୋଲି ରଡ଼ିଟାଏ ଛାଡ଼ି ଘରେ ପଶି କବାଟ କିଳି ଦେଲାଣି ! ବୋହୂଟା ହାଉଳି ଖାଇ ଠା ପଡ଼ିଗଲା, ଚେତା ନାହିଁ । ଶୁନ୍ଧୀ ଅଳ୍ପ ଦୂରରେ ଥିଲା, ଧାଇଁ ଆସି ବୋହୂଟିକୁ କାଖେଇ ପକଡ଼ ଘର ଭିତରକୁ ନେଇଗଲା, ମୁହଁରେ ପାଣି ଛାଟିବାରୁ ବୋହୂର ଚେତା

Digitized by srujanika@gmail.com

ବସିଲା । ଶୁନ୍ଧୀ କହିଲା, "ଆପଣ କିଛି ଡରିବେ ନାହିଁ । ସାଆନ୍ତଙ୍କୁ ଡାକି ଆଣୁଛି, ଏହି ଲଗେ ଭଲ କରିଦେବେ ।"

ସାନ ସାଆନ୍ତଙ୍କୁ ଦେଖି ବୋହୂଟାର ସାହସ ହେଲାଣି । ବରଡ଼ାପତ୍ର ପରି ଥରୁଥିଲା, ଏବେ ଓଢ଼ଣାଟି ପକାଇ ତୁନି ହୋଇ ବସିଛି । ସାନ ସାଆନ୍ତଙ୍କ ଗୁଣ୍ଡ ଶୁଣି ପଦ୍ମା ମଧ୍ୟ ଆସି ପହଞ୍ଚିଗଲା । ମାତ୍ର ଏ ପର୍ଯ୍ୟନ୍ତ ତା ଦେହଟା ଟିକିଏ ଟିକିଏ ଥରୁଛି, ପାଟିରୁ କଥା ବାହାରୁ ନାହିଁ । ଦୁଇଖଣ୍ଡ ଆସନ ପଡ଼ିଲା, ବୋହୂ ଆଉ ସାନ ସାଆନ୍ତ ମୁହାଁମୁହିଁ ହୋଇ ବସିଲେ । ସାଆନ୍ତ ପଚାରିବାରୁ ପଦ୍ମା କହିଲା, "ହଁ, ମୁଁ ସାପଟାକୁ ଦେଖିଛି—ତିନି କି ଚାରି ହାତ ଲମ୍ବ, ଦେହସାକ କଳା ହଳହଳିଆ ତୋରିତୋରି ଚିହ୍ନ ହୋଇଛି । ମୁଁ ଯେମିତି ସାପଟାକୁ ଦେଖିଲି, ତାକୁ ବାଡ଼େଇବା ପାଇଁ ଜେମାଙ୍କୁ ବସାଇ ଦେଇ ବାଡ଼ି ଖୋଜିବାକୁ ଧାଇଁଲି ।" ଦୁଷ୍ଟ ଶୁନ୍ଧୀଟା ମୁହଁରେ ଲୁଗା ଦେଇ ଟିକିଏ ହସିଲା ।

ସାପ କାମୁଡ଼ିଛି କି ନାହିଁ, ସାଆନ୍ତ ବୋହୂ ଗୋଡ଼ ଉଡ଼ଆଣି ପରଖି ବସିଲେ । ବୋହୂଟା ଗୋଡ଼ ଉଡ଼ ନେଇଥାଏ । ସାଆନ୍ତ କହିଲେ, "ହାଁ ହାଁ, ଏପରି କଲେ ମନ୍ତ୍ର କାଟୁ କରିବ ନାହିଁ ।" ଦେଖାଗଲା, ବୋହୂର ବାଁ ଗୋଇଠିରେ ଘାଉଡ଼ ହୋଇଛି । ସାଆନ୍ତ କହିଲେ, "ହଁ ହଁ ସତ—ପଦ୍ମା କଥା ସତ, ଏଟା ଚିତା ନାଗ । ଦେଖୁ ନାହିଁ, ଗୋଟାଏ ଦାନ୍ତ ବସିଛି । ଏ ନାଗର ଗୋଟାଏ ବୋଲି ଦାନ୍ତ । ଚିନ୍ତା ନାହିଁ । ହ'କଲ ମନ୍ତ୍ର ଡାକି ଦେଲେ ସବୁ ବିଷ ହରିଯିବ । ଆଲୋ ଶୁନ୍ଧି, ଯା, ତେଜବତୀ ହାତରେ ପୋଖରୀରୁ କଂସାଏ ପାଣି ଆଣ—ତେଜବତୀ ଆଖି ବୁଜି ଯିବୁ । ସାପର ଗୋଟାଏ ଦାନ୍ତ ପଡ଼ି !"

Digitized by srujanika@gmail.com

ସାଆନ୍ତ—'ହଁ, ଏବେ ମୁହଁରୁ ଲୁଗା କାଢ଼ ।' ବୋହୂ ଓଢ଼ଣାଟାକୁ ଆହୁରି ଭିଡ଼ ଦେଉଛୁ । ପଘା 'ଆଗୋ ମା ! ଓଢ଼ଣା କାଢ଼, ଓଢ଼ଣା କାଢ଼' କହି ଆଗେ ଓଢ଼ଣାଟା କାଢ଼ି ପକାଇଲା । ବୋହୂଟା ଭିଡ଼ ମୋଡ଼ ହୋଇ ଥାଏ । ପଘା ଆଉ ଶୁନ୍ଦୀ ଦୁହେଁଯାକ ବୋହୂର ଦୁଇ ବାହୁ ଆଣ୍ଠ କରି ଧରି ବସିଥାନ୍ତି । ସାଆନ୍ତ ବୋହୂର ଜୁଡ଼ା ଫିଟାଇ ପକାଇଲେ । ଜୁଡ଼ା ଫିଟାଇବା ବେଳେ ବୋହୂଟା କେତେ ଭିଡ଼ ମୋଡ଼ ହେଲେ, ପଘା ମୁଣ୍ଡରେ ପିଠିରେ ହାତ ବୁଲାଇ ବହୁତ ହେମତ ଦେଉଥାଏ । ବୋହୂଟା ଆଉ କ'ଣ କରିବ, ଯୋଡ଼ାଏ ମାଇକିନିଆ ଆଣ୍ଠ କରି ଧରିଛନ୍ତି, ପଘା ପିଠିରେ ହାତ ବୁଲାଇ ହେମତ ଦେଉଥାଏ । ସାଆନ୍ତ ପାଣି କଂସାକ ମନ୍ତ୍ରି ବୋହୂ ମୁହଁ, ଘାଉଡ଼ ଜାଗା ତିନି ଥର କରି ଧୋଇଦେଲେ । ତାହା ବାଦେ କହିଲେ, "ଏବେ ମୁଁ ଗାରୁଡ଼ ଡାକିବି, ମୋ ମୁହଁକୁ ଏକ ଧ୍ୟାନରେ ଗୃହିଁ ରହିବାକୁ ହେବ ।" ଏଣେ ଜୀବନବିକଳ କଥା, ତେଣେ ମାଇକିନିଆ ଦୁଇଟାଙ୍କ ପାଟି—'ଗୃହଁ ଗୃହଁ !' ବଡ଼ କଷ୍ଟରେ ବୋହୂ ମୁଣ୍ଡଟାକୁ ଟିକିଏ ଓହଳାଇ ସାଆନ୍ତଙ୍କୁ ଏକ ଧ୍ୟାନରେ ଗୃହିଁ ରହିଲା । ବାବୁ ଗାରୁଡ଼ ମନ୍ତ୍ର ଡାକିଲେ ।

"ଅଂ, କାଳନ୍ଦୀ ହ୍ରଦରେ ଥିଲା କାଳୀ;
କୃଷ୍ଣ ଗଲେ ପଦ୍ମ ତୋଳି;
କାଳୀ ଦେଲା କାମୁଡ଼ି;
ଶ୍ରୀକୃଷ୍ଣ ଗଲେ ପଡ଼ି ।
ଗରୁଡ଼ ଅଇଲା ଉଡ଼ି କରି;
ବିଷ ଗଲା ଘା ମୁହଁରେ ହରି ।"
ଆ—ଫୁ—ଆ—ଫୁ—ଆ—ଫୁ—

Digitized by srujanika@gmail.com

ଏହିପରି ସାତଥର ମନ୍ତ୍ର ପଢ଼ିସାରି ରୋଗିଣୀ ବେକରେ ଦଣ୍ଡେ ମନ୍ତା ସୂତା ବାନ୍ଧିଦେଲେ । ସାଆନ୍ତ କହିଗଲେ, 'ଛିନା ନାଗ ସାପ ବିଷ ପାଞ୍ଚଦିନ ରହେ—ପାଞ୍ଚଦିନ ସକାଳ ସଞ୍ଜ ମନ୍ତ୍ର ଫୁଙ୍କାଯିବ ।'

ସାଆନ୍ତ ଦେଖିଲେ, ରୋଗିଣୀ ଦେହରୁ ଅସଲ ବିଷଟା ତେର ଛାଡ଼ି ଗଲଣି । ମନ୍ତ୍ରଫୁଙ୍କାବେଳେ ବୋହୂଟା ଖୁବ୍ ବଳରେ ଓଠ କାମୁଡ଼ି ରହୁଛି, ହସ ସମ୍ଭାଳି ପାରୁ ନାହିଁ । ପଞ୍ଚମ ଦିନ ସକାଳେ ସାଆନ୍ତ କହିଲେ, "ବୋହୂ ବେକରେ ଯେଉଁ ସୂତା ବନ୍ଧା ହୋଇଛି, ଶନିବାର ବଡ଼ ସକାଳେ ଜଣେ ବିଧବା ସ୍ତ୍ରୀ ଅଧୂଆ-ମୁହଁରେ ତେବରି ହାତରେ ସେ ସୂତା ଛିଣ୍ଡାଇ ନେଇ ଏକମୁହାଁ ଚାଲିଯିବ, ତିନ ମାସ ତିନି ପକ୍ଷ ତିନି ଦିନ ଦେଖା ଦେବ ନାହିଁ ।" ପଧା ଚଞ୍ଚଳ କହି ପକାଇଲା, "ଆଉ କାହା ହାତରେ ଦେବ ନାହିଁ, ମୁଁ ସୂତା ଛିଣ୍ଡାଇ ନେଇଯିବି ।" ସାଆନ୍ତ ତ ସେହି କଥା ଖୋଜୁଥିଲେ, ମନରେ ବଡ଼ ଖୁସି ! ପଧା ମନରେ ବି ବଡ଼ ଆନନ୍ଦ—'ଭଲ ହେଲା, ଗାଁରୁ ପଳାଇବା—ଏ ସାପୁଆ ମୂଲକରେ କିଏ ରହିବ ମ ?'

ମାସେ ଦୁଇମାସ ବିତିଗଲାଣି । ସ୍ତ୍ରୀ ପୁରୁଷ ଦୁଇଜଣ ଉଆସ ଭିତରେ ବସି ପଢ଼ାପଢ଼ି କରନ୍ତି । ଉଆସ ପଛ ଚୋଟା ନିରୋଳା । ଦୁଇଜଣ ଫୁଲ ବଗିଚାରେ ସଞ୍ଜବେଳେ ବୁଲାବୁଲି କରନ୍ତି । ମୋହିନୀଟି ବୁଦ୍ଧିମନ୍ତୀ, ଗୁଡ଼ାଏ ପଢ଼ିଗଲାଣି ।

ଦିନେ ମୋହିନୀ ହସି ହସି କହିଲା, "ହଁ ହେ, ତୁମେ ଏତେ ଦୁଷ୍ଟ ନା ?" ଖଣ୍ଡେ କାଗଜ, ଖଣ୍ଡେ ଡାଙ୍ଗ ପଲଙ୍କ ତକ୍ତ କାଢ଼ି ଆଣିଲା—ତିନି ଆଙ୍ଗୁଳ ଅନ୍ଦାଜ ଚୌଡ଼ା, ଦେଢ଼ ହାତ ଲମ୍ବ ଖଣ୍ଡେ

Digitized by srujanika@gmail.com

କାଗଜ—କଲା ଆଜ ହଳଦିରେ ରଙ୍ଗ ହୋଇଛି—ଏକ ପାଖ ମୁଣ୍ଡରେ ଖଣ୍ଡେ ଗେଣ୍ଡୁଟିବନ୍ଧା । ସେହି ଗେଣ୍ଡୁଟିଟା ଧରି ଫୋପାଡ଼ି ଦେଲେ କାଗଜ ଖଣ୍ଡିକ ହଲହଲ ହୋଇ ସାପପରି ଚାଲିଯାଏ । ଆଜ ଖଣ୍ଡେ ବାଉଁଶକଣି ଅଗରେ ଗୋଟାଏ କଣ୍ଟା ବନ୍ଧା । ମୋହିନୀ ହସି ହସି କହିଲା, "ତୁମେ ଏଡ଼େ ଦୁଷ୍ଟ, କବାଟ କଣରୁ କାଗଜ ଖଣ୍ଡ ଫୋପାଡ଼ ଦେଇ କଣ୍ଟାଟା ଫୁଟାଇ ଦେଲ ?" ମଦନ ବାବୁ କହିଲେ, "ହୋଇ ନେ ଶୁଣି, ସ୍ତ୍ରୀଙ୍କୁ କହି ଦେଲୁ କିଁଆ ? ସାପ ଦେଖାଇଲୁ କିଁଆ ?" ଶୁଣି ହସି ହସି ପଳାଇଲା ।

---

# ବିଜୟ ଉତ୍ସବ

ଘର ଭିତରେ ପଶିଯାଇ ମୁକୁନ୍ଦ ଡାକିଲା, "ନେବୁଟି ମାଣିକ, ଏ ଚେର ମୁଠାକ ଭଲ କରି ପାଣିରେ ସିଝା ।"

ମାଣିକ ଆସି ତା' ହାତରୁ ଶୁଖିଲା ଚେରଡାଙ୍ଗ ଗୁଡ଼ାଏ ନେଇ ପଚାରିଲା, "କେତେ ପାଣି ଦେବ ?"

"ବେଶି ନୁହ, ଅଧସେରେ କାଣ୍ଡରି, ପାଣିଟା ନାଲି ଉଠି ଆସିଲେ ଓହ୍ଲାଇ ପକେଇବୁ । ସେଇ ସିଝା ପାଣିରୁ ଟୋକେ ଲେଖାଁ ଦବାକୁ ହେବ । ଆଜ ନେ ଏଇ ନବାତ ଖଣ୍ଡ, ବେଶି ଶୋଷ ହେଲେ ଟିକଏ ଟିକଏ ପଣା କରି ଦବୁ ।"

"କବିରାଜ କଣ କହିଲା ? ଭଲ ହୋଇ ଯିବଟି ?" ମାଣିକ ପୁଣି ପଚାରିଲା । ତା' ତୁଣ୍ଡରୁ ଯେମିତି କଥା ବାହାରୁ ନାହିଁ । ଚଉଦ ପୂରି ପନ୍ଦର ପଶିଲାଣି, ଯେ କହିବ ଦଶ ଏଗାରରୁ ବେଶି ନୁହ । ଖାଲି ଯାହା ହାଡ଼ ଚମଖଣ୍ଡ ଦୋହଲୁଚି ।

Digitized by srujanika@gmail.com

ମୁକୁନ୍ଦ ମୁରବିପଣିଆ ଦେଖେଇ କହିଲା, "ଭଲ ହେଇ ମିବନ ତ ଭୁଗୁଛୁ ମୁଁ ଏତେ ଧାଇଁଛି ।" ନିଧି ମେକାପ ଆଜ ଆଠଣା ପଇସା ପାଇ ଭାରି ଖୁସି । କହିଲା, "ତୁ କିଛି ପରବାଏ କର ନା ପୁଅ ! ଆଜ ଭଲ ଟାଣୁଆ ପାଚନଟାଏ ଦେଇଚି । ନାଡ଼ି ତ ଖାସା ଚାଲିଲାଣି । ଦେଖିବ କାଲି ସକାଳକୁ ବାପ ତୋର ଝାଡ଼ି ଝୁଡ଼ି ହେଇ ଯେବେ ନ ବସିବ ମୋ ନାଁ ନିଧି ମେକାପ ନୁହଁ ।"

ମାଣିକ ଡଗ ଡଗ ହେଇ ଔଷଧ ପିଏଇବାକୁ ଯାଉଥିଲା, ମୁକୁନ୍ଦ ତାକୁ ପଛରୁ ଡାକି କହିଲା, "ଶୁଣ୍, କାଲି ସକାଳେ ପଥି ଚୁରେଟି ଦବାକୁ ବଇଦ କହିଚି । ପୁରୁଣା ଚାଉଳ ନ ହେଲେ ତ ହବ ନି, କଣ କରିବା ?"

ସେ ଖବର ଅବା ମାଣିକ କୁଆଡ଼ୁ ଦବ ! ନଉକୁଣା ଗାଁଟାରେ କାହା ଘରେ ହେଲେ ପୁରୁଣା ଚାଉଳ ମାଣେ ମିଳିବ ! ଥିଲେ ବି ମୁଣ୍ଡ ପିଟିଲେ କେହି କାଢ଼ିବେ ନାହିଁ । ଟିକଏ ଭାବିକି ମୁକୁନ୍ଦ ପୁଣି ଭଉଣୀକି କହିଲା, "ଆଚ୍ଛା ଦେଖିବା, ତୁ ଆଗ ଯା ।"

ତିନଯାକ ତ ଚୂଲି ଜଳନାହିଁ, ନିଆଁ ଆସିବ କୁଆଡ଼ୁ ? ମାଣିକ କୁଠାଲୁଣ୍ଡାଟିଏ ସଜାଡ଼ି କାହା ଘରୁ ନିଆଁ ଟିକଏ ମାଗିବାକୁ ବାହାରିଲା । କାଲି ସକାଳେ ପୁରୁଣା ଚାଉଳ କେଉଁଠୁ ଆସିବ ଭାବି ଭାବି ମୁକୁନ୍ଦ ବାପ ବେମାର ପଡ଼ିଥିବା ଟୁଙ୍ଗି ବଖରାରେ ପଶିଲା । ତାହାର ବାପ ଗୁଣ ପରିଡ଼ା ଦି'ମାସ ହେଲା କଟରା ଛାଡ଼ିବାକୁ ନାହିଁ, ଏଇ ଦି'ମାସ ଭିତରେ ମୁକୁନ୍ଦର ମା ବି ଚାଲି ଯାଇଛି । ତା'ଆଗରୁ ତ ଆଠ ଦିନ ଛଡ଼ାରେ ତାର ସାନ ଭାଇ ଯୋଡ଼ିକ ମରିଗଲେ । କି ରୋଗ ଧରିଲା କେଜାଣି, ଆଗ ଖାଲି ହାତଗୋଡ଼ ଫୁଲିଗଲା । ଏମିତି ରୋଗରେ ତ ଗାଁ ଭିତରୁ କେତେ

Digitized by srujanika@gmail.com

ଲୋକ ମଲେଣି । ନଦାନ ଯାହାକୁ ଧରବ, ତାକୁ ବଞ୍ଚେଇବ କଏ ? ମଣିଷର ତ ଜନ୍ମ ହୋଇଛି ମରବାକୁ, କଏ ଅବା ଆଗ ମରୁଚ, ଆଉ କଏ ପଛରେ ।

ତେବେ ମୁକୁନ୍ଦର ମନ କାହିଁକ ବୁଝେ ନାହିଁ । ଟିକଏ ଭଲକର ଔଷଧ ମଷୁଧି କରଥିଲେ ସେମାନେ ଅବା ଜୀଇଥାନ୍ତେ ! ସେତେବେଳେ ଘରେ ପଇସାଟିଏ ନ ଥାଏ । ଧାର ଉଧାର ଯାହା କଲ ସେଥିରେ ପଥି ଦୋ'ଟି ପାଇଁ ନଅଣ୍ଟ ।

ଘରଭିତରେ ପଶି ଦେଖିଲ, ବାପ ତାକୁ ହାତଠାର ଡାକୁଚ । ପାଖରେ ଯାଇ ବସିଲରୁ ଅତି କଷ୍ଟରେ କହଲ, "ତୁ ମୋ ପାଇଁ ଭାବନା କରନା । ମୁଁ ଭଲ ହୋଇଯିବ ଯେ ।" ମୁକୁନ୍ଦର ଟିକଏ ଦମ୍ଭ ଆସିଲ । ହଁ, କାହିଁକ ଭଲ ନ ହବ ! ତାର ତ ଗୋଡ଼ ହାତ ଫୁଲ ନାହିଁ, ଦେହରୁ ତବଣ୍ଟ ଟିକଏ ଓହ୍ଲେଇ ଆସିଛି । ଖାଲ ହଗାଝାଡ଼ା ବନ୍ଦ ହୋଇଗଲେ ଚେଣିକ ବଇଦ ତ କହଚ, ଏଇ ପାଚନ ପାଣିରେ ସବୁ ଊଣା ହୋଇଯିବ ।

ମା-ଭାଇଙ୍କ ପାଇଁ ମୁକୁନ୍ଦ ସିନା କଛି କର ପାରଲନ । ଯାହା ପାରୁ ତା' ହେଉ, ବାପକୁ ନଶ୍ଚେ ବଞ୍ଚେଇବ । ସେଇମାନଙ୍କୁ ବଞ୍ଚେଇ ରଖିବାକୁ ତ ବାପ ତାର ସବୁତକ ଜମି ବକ ଦେଇଛି । ଗୁଣ ପରଡ଼ାର ଚ୍ଚର ମାଣ ଚ୍ଚଷ ଜମି ଚ୍ଚର ବର୍ଷ ଆଗେ ଥିଲ । ଛଉସ୍ତ୍ରୀ ବର୍ଷ ଯେତେବେଳେ ଓଡ଼ଶା ସରକାର ଓ ନେତାମାନେ ଏହାକୁ ବଳକା ପ୍ରଦେଶ କହ ବାହାରକୁ ଧାନ ରପ୍ତାନ କରେଇଲେ, ମୁକୁନ୍ଦର ବାପ ଗୁଣ ପରଡ଼ା ଧାନ କଣି ପିଲ କବଲଙ୍କୁ ବଞ୍ଚେଇବ ବୋଲ ଜମି ବକା ଆରମ୍ଭ କଲ ସେତକ ବେଳୁଁ । ସେତକ ବେଳେ ତାର ବଡ଼ ଝିଅ ଉମାର ବର ଢନେଇ

Digitized by srujanika@gmail.com

ସ୍ୱାଇଁ ପିଲା ଭଉଣୀଙ୍କୁ ଛାଡ଼ି କୁଆଡ଼େ ବାହାରିଗଲା । ଆଉ ଉମା ? ତା ନାଁ ଉଣ୍ଡରେ ଧର ନାହିଁ । ପିଲା ଯୋଡ଼ିଙ୍କୁ ଛଡ଼ରରେ ଛାଡ଼ି ସେ ପଶିଲା ହାଡ଼ ଘରେ । ବାପ-ଭାଇଙ୍କର ନାଁ ପକେଇଲା । କାହିଁକି ! ନ ଖାଇ ନ ପିଇ ତ କେତେ ଲୋକ ମଲେ, ଆଜ ବି ମରୁଛନ୍ତି । ତାକୁ କଆଁ ମରଣ ହେଲା ନାହିଁ ! କେତେ ଲୋକ କେତେ କଥା କହନ୍ତି । ଗୁଣ ପଣ୍ଡା ଛାତିରେ ସବୁ କଥା ଖିନ ଗାର ହେଇ ରହିଥାଏ ।

ଆଜ କତସ୍ବରେ ପଡ଼ି ଉମା କଥା ତା'ର ମନେ ପଡ଼ିଗଲା । ମୁକୁନ୍ଦକୁ କେତେବେଳଯାଏଁ ଗୃହିଁ ରହି ସେ ପଚ୍ଚାରିଲା, "ଉ—ମା" ? ମୁକୁନ୍ଦର ସେ ବଡ଼ ଭଉଣୀ । ପେଟ ବିକଳରେ ସେ ଏଇସ୍ଥା କଲା । ତାକୁ ଜହର କ'ଣ ମିଳଲା ନାହିଁ ! କୁଆଡ଼େ ସେ ଭୁବନେଶ୍ୱରରେ କେଉଁ କାନଡଗିଚି ପାଖେ ଅଛି । କଏ କହେ ପୁଣି ହାଡ଼ ଘରେ ପଶିଲାଣି । ତା ନାଁ ପଡ଼ିଲେ ମୁକୁନ୍ଦ ଉଠି ପଳେଇ ଆସେ । ଇଚ୍ଛା ହୁଏ, ତାକୁ ଆଗରେ ପାଇଲେ ଚିକି ଚିକି କାଟି ପକାନ୍ତା । ବାପ ମୁହଁରୁ ଆଜ ତା'ର ନାଁ ଶୁଣି ମୁକୁନ୍ଦର ଗୋଡ଼ରୁ ମୁଣ୍ଡଯାକେ ରଞ୍ଜକ ଲଗିଲା ପରି ଜଳ ଉଠିଲା । ବେମାର ଦେହ ନ ଥିଲେ ତାକୁ ଆଜ ସେ ଦି'ପଦ ଶୁଣେଇ ଦଅନ୍ତା ।

ବାପକୁ କିଛି ଜବାବ ନ ଦେଇ ସେ ସାନ ଭଉଣୀକି ଡାକିଲା, "ମାଣିକ, ପାଚନ ପାଣି ହେଲାଣି ?"

"ହିଁ, ନଉଚି" କହି ମାଣିକ ଖଣ୍ଡେ ପଥୁରି ତାଟିଆରେ ପାଚନ ଆଣି ଥୋଇଲା । ବାପକୁ ଢୋକେ ପିଆଇ ଦେଇ ସେ ବାହାରକୁ ଆସିଲା ।

Digitized by srujanika@gmail.com

ବୃଷ୍ଟିଆଉ ଅନ୍ଧାରିଆ ହୋଇଗଲାଣି । ଏ ବର୍ଷ ତ ଶ୍ରାବଣ ମାସରେ ବି ବର୍ଷା ନାହିଁ । ତେବେ ଆଜ ସଞ୍ଜବେଳୁ ମେଘ ଘୋଡ଼ାଇ ବର୍ଷା ଟୋପୁ ଟୋପୁ ପକାଉଛି । ମାଣିକ ସଳିତା ଯୋଡ଼ିଏ ସଜାଡ଼ି ମାଟିକାଞ୍ଚୁଲିରେ ଲାଗିଥିବା ଟିକିଏ ତେଲରେ ଚାକୁ ଘଷୁଥାଏ । ଦରକାର ହେଲେ ଜାଳିବ । କିରାସିନି ତ ସପନ ହେଲାଣି ଯୁଦ୍ଧ ବଜାରରେ ।

ମୁକୁନ୍ଦ ପଚାରିଲା, "ହାଣ୍ଡିରେ ଆଉ କଣ ଅଛି ?" "ଆଉ କ'ଣ ଥାନ୍ତା, କାଲିର ଗଣ୍ଡାଏ ଶୁଆଁ ପଖାଳ ପଡ଼ିଛି, ଆଣିବି ?" ମାଣିକର ଶୁଖିଲା ମୁହଁରେ ଟିକିଏ ମୁରୁକି ହସ ଦେଖା ଦେଇ ନଭିଗଲା, ଖରା ଝାଞ୍ଜିରେ ମଉଳା କଢ଼ି ଫୁଟି ଆସୁ ଆସୁ ଝଡ଼ି ପଡ଼ିଲା ପରି । ସେ ହସ ଯେ ଥରେ ଦେଖିଛି ଦୁନିଆରେ ତାର ଆଉ କିଛି ହସ ଦେଖିବା ଲୋଡ଼ା ନାହିଁ ।

"ତୁ ସେ ଗଣ୍ଡାକ ଖାଇ ଦେ । ସ୍ତ୍ରୀଜାକ ଶୁହିଁବାକୁ ପଡ଼ିବ ।"

"ଆଜ ସକାଳେ ମୁଁ ସେଥିରୁ ଅଧେ ଖାଇଥିଲି । ତୁ ପରା ଅପରଦିନଠୁଁ କିଛି ଖାଇନୁ ?"

"ଚୁପ୍ କର ମିଛେଇ । ପରଦିନ ସକାଳେ ଶୁଆଁ ଯାଉ ରାନ୍ଧି କାହାକୁ ଦେଇଥିଲୁ ?"

ମାଣିକର ମନେ ପଡ଼ିଲା, ସତେ ପରଦିନ ଶୁଆଁ ଯାଉ କରିଥିଲା । ତିନଦିନର ବାସି ପେଟରେ ଖୁଦ ସାରୁପତ୍ର ପକାଇ ତରକାରି କରି ଭାଇକୁ ଦେଇଥିଲା । ସେ ଟିକିଏ ଶଙ୍କିଯାଇ କହିଲା, "ତୁ କାଲି କିଛି ଖାଇନୁ; ଆଜ ବି କିଛି—"

ନାଲି ନାଲି ଡୋଳା ଦିଟା ବାହାର କରି ମୁକୁନ୍ଦ ତମ୍ପ ପରି ଗର୍ଜି ଉଠିଲା, "କିଏ ତତେ କହିଲା, କିଛି ଖାଇନି ? ମୁଁ ଯେତେ-

Digitized by srujanika@gmail.com

ବେଳେ ଯାହା ଖାଇଲ, କଲ, ତତେ ସବୁ ଦେଖେଇ କରୁଥିବ କ ? ତୁ କଣ ମୋର ମୁରବୀ ନା ମତେ ପୋଷୁଚୁ ?"

ବାପ ମା'ଙ୍କ ମୁହଁରୁ ମୁକୁନ୍ଦ କେତେ ଥର ଶୁଣିଛି, ସେ ତାଙ୍କର ପୋଷିଲା ପୁଅ । ଅଳପ କଣ୍ଟା ତ ନୁହଁ, ସତର ବର୍ଷ ହେଲାଣି । ତିନ ଚାରି ବର୍ଷ ହେଲା ହଳ ପାଳ ସବୁ କାମକୁ ପାରିଲାଣି, ଏବେ ତ ପାଣିବୁହା, ମାଟିହଣା କେଉଁଥିକ ତାର ପରବାୟୁ ନାହିଁ । ବାହାଘର ହେଇ ସାରଲାଣି; ମା ବରୁଷ ଦେଖିବ ଦେଖିବ ବୋଲି ଦେଖି ପାରିଲା ନାହିଁ । ମା'ତ ମଲାଣି, ବାପ ରୋଗରେ ପଡ଼ିଚ । ମାଣିକ ମାକୁଡ଼ୀଟା କଣ ତାକୁ ଆକଟ କରିବ ? ସେ ମୁରବି-ପଣିଆ ଦେଖେଇ କହିଲା, "ମୋ କଥାରେ ଏଣିକ କଥା କହିବୁ ତ ଦେଖିବୁ କଣ କରିବ । ଏଇଟାର ବାର ମାସରେ ତେର ରୋଗ । ଫୁଙ୍କିଦେଲେ କୁଆଡ଼େ ଉଡ଼ିଯିବ । ତୋ ଭଳି କାହାଣେ ହେଲେ ବି ମତେ ଭଲା ଖାଇବାକୁ ଦେଇ ପାରିବେ କ ନେ ? ମୁଁ ଦାଣ୍ଡ ହାଟରେ ଚଳିବା ଲୋକ । ମୁଡ଼ି ଚୂଡ଼ା ଯେତେବେଳେ ଯାହା ପାଇଲି, ଖାଇଲି । ତୁ ପରା ଆଜି ଖାଇଚୁ । ବୁଝିଲୁ ପଚାରିବା, କିଏ ଖାଇଲା ପରି ଦୁଇଚ—ତୁ କି ମୁଁ । ଗଲା ରଜକୁ ବାଘୁଡ଼ି ଖେଳରେ ଘନିଆ ମୋ ପାଖରୁ ଯଉଁ କଉଡ଼ିଏ ପାଇଛି—ଆଜଯାକେ ତା ଅଣ୍ଟାରୁ ପଇସ ଗଲାଣି ଭଲା ? ଯା ତୁନି ହେଇ, ଯାହା କହୁଚି ଆଗ କର ।"

କାଲିର ଶୁଆଁ ପଖାଳ, ଲାଳ ଧରି ଯିବଣି; ହଉ ତେବେ, ମୁକୁନ୍ଦ ପଛେ ତାକୁ ନ ଖାଇଲା । ସତେ ସେ ତ ପରିଦିନ ଶୁଆଁ ଯାଉ ଖାଇଥିଲା । ଆଜି ଯେଉଁ ଗୃତଲ ପୋଷକ ଅଛି, କାଲି ସକାଳେ ମାଣିକ ସେମିତି ଟିକିଏ ଯାଉ ତା'ପାଇଁ କରିଦବ । କେତେଆଡ଼େ

Digitized by srujanika@gmail.com

ଧଁା ଧପଡ଼ କରୁଚି, ଦି'ଦିନେ ଗୃରି ଦିନେ ପେଟରେ କିଛି ନ ପଡ଼ିଲେ ତା'ଗୋଡ଼ ହାତ ଚଳିବ କେମିତି ।

ଘର ଭିତରେ ରୋଗୀ କୁନ୍ଥେଇଲା । ଭାଇ ଭଉଣୀ ଦିହେଁ ବାପକୁ ଧରାଧରି କରି ଶଜଚ କରେଇଲେ; ସଳିତା ଜାଳି ନିବାତି ପଣା ଟିକିଏ ଦେଲେ । ଦିହେଁ ପୁଣି ବାହାରକୁ ଆସିଲେ । ମାଠିଆରୁ ପାଣି ମୁନ୍ଦେ ଠେକଟାରେ ଗଡ଼ାଇ ମୁକୁନ୍ଦ ଢକ ଢକ କରି ଢୋକେ ପିଇଲା । ମାଣିକକୁ ମିଛରେ କହିଲା, ମୁଡ଼ି ଦି'ଟା ଗୈବେଇ ଦେଇ ଭାରି ଶୋଷ ହଉଥିଲା । ତୁ ଏଥର ଯାଇ ପଖାଳ ଗଣ୍ଡାକ ଖାଇଆ । ପାଣିଠାରୁ ବଳି ପଦାର୍ଥ ନାହିଁ । ଭୋକ ହଉ ଶୋଷ ହଉ, ମୁନ୍ଦେ ପିଇଦେଲେ ସବୁ ଥଣ୍ଡା ପଡ଼ିଯାଏ । ମୁକୁନ୍ଦ ସେ ଉପାୟଟି ଭଲକରି ଶିଖିଚି ।

ଦଣ୍ଡକ ଭିତରେ ମାଣିକ ହାଣ୍ଡି ସଫାକରି ପଦାକୁ ଆସିଲା; କହିଲା, "ସେନା ଘରେ ଦି ଓଳି ତବତ ହୁଏ ।"

ମୁକୁନ୍ଦ ଏଉଡ଼ଟା ମାରି କହିଲା, "ତୁ ଏମିତି ଡାହାଣୀଙ୍କ ଭଳି ହୁଅ ନା । ସେନା ଘରେ ଖାଇଲେ ବୋଲି ତୁ କଅଣ ଯାଇ ମାଗିବୁ ? ମୁଁ ଗୁଣ ପରିଡ଼ା ପୁଅ, ଜାଣୁ ? ଆମେ ଲାଗି ଖାଇବୁଁ ସିନା ମାଗି ଖାଇବା ଆମ ଜାତକରେ ନାହିଁ । ଦି'ଓଳି ନ ହେଲା ପଛେ ଆମରି ଘରେ ତ ପୁଣି ଓଳିଏ ଚଳିଲା ହଉଥିଲା ! ଏବେ ନ ହେଲା ଦି'ଦିନେ ଗୃରିଦିନେ ଥରେ ହଉଚି । ହଉ, ଟିକିଏ ଥୟ ଧର, ବାପ ଖାଲି ଭଲ ହଉ, ଦେଖିବୁ ଆଗମିତି ଓଳିଏ ଚଳିଲା ହବ କି ନାହିଁ । ଆଉ ଯେବେ ସମ୍ଭାଳି ନ ପାରୁଚୁ ତେବେ ଯାଇ ଛତରରେ ପଶ୍ । ଗୋଟାଏ ତ ଯାଇ କୁଆଡ଼େ ମଲା, ସବୁରି ନାଁ ପକେଇଲା । ତୁ ଯିବୁ ଯେବେ ଯା । ଏଇ ଗାଁରେ ତ କେତେ ଦୁଆରେ ସେମିତି କଣ୍ଠା ଛଟା ହେଲଣି ।"

Digitized by srujanika@gmail.com

ଆମ୍ବିଳ ତୋରାଣି ପିଇ ମାଣିକ ବର୍ଷ୍ଟଘର ଡଡଲ ଭାତ ପିନ୍ଧା ମନେ ପଡ଼ିଲା । ସେ ସୁକୁ ସୁକୁ ହୋଇ କହିଲା, "ଡତେ ପଦେ କହିଲଛଣି ତୁ ଦଶ ପଦ କହି ସବୁବେଳେ ମତେ ବକୁଚୁ ।"

"ତୁ କାହିଁକି ଯେନା ଘର ଛେନାଘର କଥା କାଢ଼ୁଚୁ ? ଆମ ଘରେ ଯେଉଁ ତୋରାଣି ଯାହା ଅଛି, ସେଇ ଆମର ଖିର ଶାକର । ଏତେ ଲୋକଙ୍କ କଥାରେ ଆମର କଣ ଯାଏ ଆସେ । କିଏ କଣ ଆମକୁ ଦଉଚି ? ଯା ଏଥର ଶୋଇବୁ । ମତେ ଏଛୁଣି ନିଦ ହବନି, ମୁଁ ଜଗିବି । ନିଦ ଆସିଲେ ତତେ ଉଠେଇ ଦେବି ।"

ସତେ ସେ ମାଣିକ ଉପରେ ରାଗୁଚି କାଇଁକି ! ପିଲାଟାର ଡଡଲ ଗଣ୍ଡିଏ ଖାଇବାକୁ ଅବା ମନ ହଉଥିବ । କେତେବେଳେ ମୁଆଁଟାଏ କି କୋରଟାଏ କିଛି ତ ପାଇଲା ନାଇଁ । ସେ ନିଜେ ପିନ୍ଧା ତିନି ଚାରି ଦିନ କିଛି ନ ଖାଇ ରହି ଯାଉଚି । ମରଦ ପୁଅ—ତା' ସାଙ୍ଗରେ କେତେ କି ସେମିତି ରହୁଚନ୍ତି । ଏ ତ କିଛି ନୂଆ କଥା ନୁହଁ, ତା ବୋଲି ପିଲା ଭଉଣୀଟା, ନ ଖାଇ ନ ପିଇ କେତେ କଲବଲ ହବ ।

ହଁ, କାଲି ସକାଳେ ବାପଘାଇଁ ହ'ଟା ପଥି ରନ୍ଧା ହେବ । ପୁରୁଣା ଚାଉଳ ଆସିବ କୁଆଡ଼ୁ ? ପୁଣି ସେଇ ନୂଆପଡ଼ା ବାଣ୍ଟା ସାଜ ଦୁଆରକୁ ଯିବ ? ତା'ର ଘରେ ମୂଲ ଲାଗି ମୁକୁନ୍ଦ ଆଗରୁ ପାଞ୍ଚ ଟଙ୍କା ଆଣିଚି । ଆଜ ଭାଇ ମଲା, କାଲି ମା ଶୁଧିଅ; ଏବେ ପୁଣି ବାପର ହିହଦୁଖ ବୋଲି ମୁକୁନ୍ଦ ଯାଇ ନ ପାରି କେତେ ଦିନ ତାର କାମ ପଡ଼ିଆ ହେଲାଣି । ତା' ଦୁଆରେ ଯାଇ ମୁହଁ ଦେଖେଇବ କେମିତି ? ଆଉ କଣ ଯେନାଘର ? ତାକୁ ଭୁଣ୍ଡି ସରେଇ ଲାଭ କଣ ? ସେଠି ତ ସବୁବେଳେ ନାହିଁ ପଦ ଛଡ଼ା ଆଉ

Digitized by srujanika@gmail.com

କିଛି ନାହିଁ ! ଘରେ ପଶି ନଷ୍ଟ ଡା'ଟିଏ ଚୂଡ଼ା ଚିନି ଖାଉଛନ୍ତି ! ବୋଉ ବଡ଼ଦୁଖରେ ପଡ଼ିଥିଲା ବେଳେ ମୁକୁନ୍ଦ ଚିନି ଟିକିଏ ମାଗିଲାରୁ ନାହିଁ କରିଦେଲା । ପଇସା ଯାଚିଲାରୁ ପୁଣି କେତେ ବେଇମାନ କଲା । ଛି, ତା' ଦୁଆରକୁ ଆଉ ଯିବ ସେ ! ହଁ, ଭଲ କଥା ମନେ ପଡ଼ିଲା—ମଣିଜଙ୍ଘା ସାଧୁପଣ୍ଡା ପାଖେ ଅଛି ବୋଲି କିଏ କହୁଥିଲା । ଦି'କୋଶ ବାଟ । ସଞ୍ଜରୁ ଉଠି ନ ଗଲେ ହେବ ନାହିଁ । ଯାହା ହେଉ ଯିବାକୁ ପଡ଼ିବ । ନଈ ପାରିଆ ଫେରୁ ଫେରୁ ଉଛୁର ହେବ ।

ମାଣିକକୁ ଡାକିଲା, "ଠଣା ଭିତରୁ ପଇସା ପୁଡ଼ାଟା ଆଣିଲୁ ।" କୋଠରି କନାଖଣ୍ଡିରେ ଗଣ୍ଠି ପଡ଼ିଥିବା ପୁଡ଼ାଟି ଆଣି ମାଣିକ ଥୋଇଲା । ଗଣି ଦେଖିଲା, ଟଙ୍କାକିଆ କାଗଜ ନୋଟ ଦି'ଖଣ୍ଡ ଆଉ ନ' ଅଣାର ରେଜା । ବାଞ୍ଛା ସାଉ ପାଖରୁ ଯେଉଁ ପାଞ୍ଚ ଟଙ୍କା ଆଣିଥିଲା ସେଥିରୁ ଏତିକ ବଳିଚି ।

ମୁକୁନ୍ଦ କହିଲା—"ହଉ, ଏ ଦି'ଖଣ୍ଡ କାଗଜ ସେମିତି ଠଣା ଭିତରେ ରଖିଦେ । ଠଣା ମୁହଁଟା ଭଲକରି ସଢ଼େଇରେ ମୁଦିବୁ । ନଇଲେ ମୂଷା ନେଇଗଲେ କି ଉଇ ଲାଗିଲେ ପାଣି ବୁଡ଼ିଯିବ ତ । ଆଜି ଏ ନ'ଅଣାଟି ନେଇ ଅନ୍ଧାରୁଆରୁ ମୁଁ ମଣିଜଙ୍ଘା ବାହାରି ଯିବି । ଦି'କୋଶ ବାଟ, ପୁଣି ନଈ ପାରିଆ । ହେଲେ ଯେତେ ସହଳ ପାରିବ ପୁରୁଣା ଗୁଡ଼ଳ ଗଣ୍ଡାଏ ଧରି ଫେରିବ । ବାପକୁ କାଲି ପଥି ଦୋ'ଟି ଦବା ।"

ମାଣିକ କହିଲା, "ତୁ କେତେବେଳକୁ ଫେରିବୁ କେଜାଣି । ସେଥର ତ ଗୁଡ଼ଳ ଟଙ୍କାଟାକର ଆଣିବୁ ବୋଲି ଦନୁଟାଏ ବଚେଇ ଦେଲୁ ।"

Digitized by srujanika@gmail.com

"ଆଲେ, ସେ ହେଲା କଣ୍ଟ୍ରୋଲ ଶୃଙ୍ଖଳ । ଲୋକେ ତ ଦି' ଦିନ ତିନି ଦିନଯାଏ ଚଢ଼ି ଚଢ଼ି ଫେରି ଆସିଲେ । ଥରେ ଯାଇ ଦେଖନ୍ତୁ କି କେତେବେ ଜାଣନ୍ତୁ । ଶହେ କି ଦି'ଶହ ଲୋକ ଧାଡ଼ି-ମୂଲିଆ ଠିଆହୋଇ ରହିଥିବେ । ଯାହା ପାଳି ଯେତେବେଳେ ପଡ଼ିବ, ତାକୁ ଯାଇଁ ସେତେବେଳେ ମିଳିବ । ଧାଡ଼ି ଭିତରେ ଛିଡ଼ାହେବା ଖାଲି ସହଜ ପଡ଼ିଚି କି ! ମୁଁ ବୋଲି କେତେ ଲୋକଙ୍କୁ ଠେଲି ପେଲି ଶେଷରେ ଯାଇ ଆଣିଲି । ଏ ତ କଣ୍ଟି କଣ୍ଟ୍ରୋଲ ଶୃଙ୍ଖଳ ନୁହେଁ । ସାଧୁପଣ୍ଡା ଦୋକାନରୁ ପଇସା ଦେଇ କିଣି ଆଣିବା କଥା । ହଁ, ଖବରଦାର ! ତୁ ଆଜି କାଲି ସକାଳେ ଶୁଆଁ ଧାନ ଝାଡ଼ିବାକୁ ଯିବୁନାହିଁ । ବାପ ପାଖେ ଖାସ ଜଗି ରହିବୁ ।"

ମାଣିକ ରୋଜ ସକାଳେ ବାଉଁଶ ପାଛିଆଟାଏ ଧରି ଶୁଆଁ ଧାନ ଝାଡ଼ିବାକୁ ଯାଏ । ତା' ଆଗରୁ ବି ଦଳ ଦଳ ପିଲା ମାଇପେ ଅଣ୍ଟାଏ ପାଣିରେ ପଶି ଶୁଆଁ ଝାଡ଼ିବାରେ ଲାଗିଥାନ୍ତି । ଯେ ଯେତେ ଆଗରୁ ଯାଏ, ସେମିତି ବେଶି ଧାନ ଆଣେ । ପୂଷ ମାସରେ ବିଲରୁ ଯାହା ବା ଧାନ ମିଳେ, ଖଜଣା ସାହୁକାରଙ୍କୁ ଦବାରେ ତ ସେଥିରୁ ଅଧେ କି ଅଧିକରୁ ବେଶି ବସ୍ତୁ ହୋଇଯାଏ । ବାକି ଯାହା ବଳେ, ସେଥିରୁ ଲୁଗାପଟା, କୁଣିଆ ମଇତ୍ର, ପୂନିଅ ପରବ ଖରଚ ଯାଇ ଘର ଖରଚକୁ ବା ରହେ କେତେ ? ଆମ୍ବଦିନେ ଯେବେ ଭଲ ଆମ୍ବ ରହିଲା, ସେଥିରେ ବି ମାସେ ପନ୍ଦର ଦିନ ଚଳିଯାଏ । ନଇଲେ କଳମ୍ବ କି ସଜନା, ସାରୁମୂଣ୍ଡା କି ଡେଙ୍ଗା କୋଶିଆ ଯାହାକୁ ଯିମିତି ମିଳିଲା, ସେଥିରେ ଚଳିଗଲା । ଶ୍ରାବଣ ଭାଦୁଅ ବେଳକୁ ସବୁରି ଘର ତ ଖାଲି । ସେତେବେଳେ ଏହି ଶୁଆଁ ଧାନ ଯାହା ଆଣ୍ଟ ରଖିଦିଏ । ଏବେ ତ ଜାଣି କାଳ ପଡ଼ିଚି । ହେଲେ ଏଣ୍ଟି ଶୁଆଁ ଧାନ

Digitized by srujanika@gmail.com

ଦ'ମାସ ହେଲା ଯଣିପୁର ଲୋକଙ୍କୁ ବଞ୍ଚେଇ ରଖିଚି । ରାତି ନ ପାହୁଁ ପଟ୍ଟାଳପର ମଣିଷ ଶୁଆଁ ଝାଡ଼ିବାରେ ଲାଗିଛନ୍ତି । ଗୋଟାଏ ପାଣି କୁହୁଡ଼ି ଚାଦର ପରି ତାଙ୍କୁ ଘୋଡ଼େଇ ପକେଇଛି । ତା'ର ଭିତରେ କାହା ଦେହରୁ ପାଲେ ଦିଶୁଚି, କାହାର ହାତଟାଏ ଦିଶୁଚି ତ ମୁଣ୍ଡ ଦିଶୁନାହିଁ । ଶହ ଶହ ବାଉଁଶ ପାଚ୍ଛିଆ ଏପାଖରୁ ସେପାଖ ବୁଲି ଆସେ ଶୂନ୍ୟରେ ଭାସିଲାଭଳି । ସତେ ଯେମିତି ଖାଲି ପାଚ୍ଛିଆ ଗୁଡ଼ାଏ କୁହୁଡ଼ି ଭିତରେ ଦୋଳି ଖେଳୁଛି, ମରଦ ମାଇପେ କେହି ନାହାନ୍ତି ।

ମାଣିକ କାନଟି ପାରି ଏରୁଣ୍ଡି ବନ୍ଧ ପାଖରେ ଶୋଇ ପଡ଼ିଲା । ମୁକୁନ୍ଦ ତାକୁ ଚାହିଁ କେତେକ କଥା ଭାବୁଥାଏ । ଏଇ ହାଡ଼ଚାରଖଣ୍ଡି ଘେନି ମାଣିକ ବର୍ଷସ ନିତି ସକାଳେ କାକର କୁହୁଡ଼ିରେ ଶୁଆଁ ଗୋଟେଇବାକୁ ଯାଉଚି । ବାଞ୍ଛାସାଜ ଘରେ ନଉକରିପଣ କରି ସେ ଅବା କାହାକୁ ପୋଷି ପାରିଲା ! ଦିନ କେତୁଟା ସେ ଘରେ ବସିଗଲା ବୋଲି ସବୁଆଡ଼ୁ ନିଅଣ୍ଟ ଧରିଲାଣି ।

ସକାଳୁ ମାଣିକ ଉଠି ଦେଖିଲା, କେତେ ଆଗରୁ ମୁକୁନ୍ଦ ପୁରୁଣା ଚାଉଳ ଅଣିବାକୁ ବାହାରି ଯାଇଛି, ତା' ଦେହଟା କମିତି ଶିରି ଶିରି ଲାଗୁଥାଏ । ଉଠି ବସିଲା, ମୁଣ୍ଡଟା ଭାରି ଲାଗୁଛି । ପୁଣି ଟିକିଏ ପଡ଼ିଗଲା । ଏମିତି କେତେଥର ତା'ର ଦେହେ ଦେହେ ଜର ଆସି ଚାଲିଯାଏ, କାହାରିକି କହେ ନାହିଁ । ବେଶି କମ୍ପ ହେଲେ ଧାନଶୁଖା ହେଁସ ଖଣ୍ଡି ଘୋଡ଼ି ହୋଇ ଘଡ଼ିଏ ପହରେ ପଡ଼ିଯାଏ । ପୁଣି ଉଠି ଘରକାମରେ ଲାଗେ । ଆଜି ବି ସେମିତି ଉଠି ଘର ଭିତରକୁ ଗଲା । ବାପ ପାଖରେ ବସି ମୁଣ୍ଡ ଆଉଁସି ଦେଲା । ବାପାର ଆଖି ମୁହଁରେ ପାଣିହାତ ମାରି ନିଜ କାନରେ ପୋଛିଦେଇ ପଚାରିଲା, "ପଣା ଟିକିଏ ଅଣିବି ?" ଶୁଣି ପରିଡ଼ାର ଆଖିଯୋଡ଼ିକ

Digitized by srujanika@gmail.com

କେଉଁ କୋରଡ଼କୁ ପଶି ଯାଇଛି । ସେ ହାତଟି ଉଠାଇ ଝିଅର ମୁଣ୍ଡ ଉପରେ ରଖିଲା । କଣ କହିବ ବୋଲି ଓଠ ଗୋଜା କରି କହି ପାରିଲା ନାହିଁ । ମାଣିକ ବୁଝିଲା, ସେ ମୁକୁନ୍ଦକୁ ଖୋଜୁଛି । କହିଲା, "ଭାଇ ପୁରୁଣା ଚଉଳ ପେଇଁ ଯାଇଛି; ଏଇ ନାଗେ ଆସିବ ।" ତିନ ଦିନ ହେଲା ବାପ ଭଲକରି କଥା କହିପାରୁ ନାହିଁ । ପଥି ଗଣ୍ଡିଏ ପେଟରେ ପଡ଼ିଲେ କଥା କହିବ ।

ପୁରୁଣା ଚଉଳ ଧରି ମୁକୁନ୍ଦ ଫେରୁ ଫେରୁ ଦିନ ଦି'ପହର । ନଈ ପାରିଆ, ନଇଲେ କେତେ ଆଗରୁ ଆସି ପହଞ୍ଚିଯାନ୍ତା । ଆଣ୍ଠୁଏ କାଦୁଅ ପଙ୍କରେ ଚଲ ଚଲ ଗାଁ ମୁଣ୍ଡ ପୋଖରୀ ତୁଠରେ ଗୋଡ଼ ଧୋଉଛି, କିଏ ଜଣେ କହିଲା, "ସଫାସୁତୁରା ପଛେ ହବୁ, ତୋ ବାପ ତେଣେ ପରା ଡୋକୋଉଛି ।"

ମୁହିଁ ଟେକି ଚାହିଁଲା, ତାଙ୍କ ପଡ଼ିଶା ଧନଆ । ଗଲା ରଜ ବାଗୁଡ଼ି ଖେଳରେ ଏହି ଧନଆକୁ ସେ କବୁଏ ଦେଇଥିଲା । ସେହି ରାଗରେ ସେ କହୁଥିବ । ମନରେ ପତିଆରା ଆସିଲା ନାହିଁ; ହେଲେ ତାର ଗୋଡ଼ଧୁଆ ସେତିକିରେ ରହିଲା । ପଚାରିଲା, "ମିଛ କହୁଛୁ ?"

"ମିଛ କି ସତ ଘରକୁ ଗଲେ ବଳେ ଜାଣିବୁ ।" କହିଦେଇ ଧନଆ ଗାଈ ଚରେଇବାକୁ ଗଲା । ମୁକୁନ୍ଦ ତାକୁ ପଛରୁ ଡାକିଲା, "ହଇ, ବାଗୁଡ଼ି ଖେଳ ହନୁ ରଗିଛୁ କି ? ସବୁ ମୋ ଦୋଷ ।" ଧନଆ ବୁଢ଼ୀ ଗାଈଟାକୁ ଠେଲି ଠେଲି ପଛକୁ ନ ଚାହିଁ କହିଲା, "ଆରେ ନାହିଁ ମ, ଆଗ ଘରକୁ ଯା ।"

ଧନଆ କଥାରେ ତା'ର ଗୋଡ଼ ହାତ କୋଳ ମାରିଗଲା । ଆକାଶଟା ତଳକୁ ଖସି ପୃଥିବୀଟା ଉପରକୁ ଉଠିଗଲା ଭଳି ଲାଗିଲା । ଦୁଆର ମୁହଁରେ ଗୋଡ଼ ଦେଇଛି କି ନାହିଁ ଶୁଣିଲା, ମାଣିକଟା

Digitized by srujanika@gmail.com

"ବାପା ଲୋ, ବାପା ଲୋ" ରଡ଼ ଛୁଡ଼ୁଛି । ଘର ଭିତରକୁ ଆଉ ଗୋଡ଼ ଚଳିଲା ନାହିଁ । ପଥିଗୃଞ୍ଜଳ ବନ୍ଧା ହୋଇଥିବା ଗାମୁଛଟା ପକେଇ ଦେଇ ସେଇଠି ବସିପଡ଼ିଲା ।

ପଥିଗୃଞ୍ଜଳରେ ବାପାର ଶ୍ରାଦ୍ଧକାମ ହେଲା । ବ୍ରାହ୍ମଣକୁ ଡାକି ଗୋଟିଏ ଟଙ୍କାରେ ଯାହା ପାରିଲା ସେତିକି କଲା । ଏ କାଳରେ କିଏ ଅବା ଭାଇଭାତ ଦେଉଚି ଯେ, ତାକୁ ବସି ଖୁଣିବେ । କମିତି ବାପାକୁ ଶୁଦ୍ଧିଅ ହେଲା, କଣ କଲା, କିଛି ତାର ହେଜ ହେଉ ନ ଥାଏ । ବାଞ୍ଛାସାଉ ଘରେ କାମ କରି ବାପ ଭଉଣୀଙ୍କି ପୋଷିବ, ମାଣିକ ନିଜ ଓଳିଏ ଲେଖାଁ ଚିତଲା ରାନ୍ଧି ବାପକୁ ପରଷିବ, ନିଜେ ଖାଇବ, କେତେ କ'ଣ ବିଚାରିଥିଲା । ସବୁ ଗୋଳମାଳ ହୋଇ-ଗଲା । ବୁଦ୍ଧିବାଟ କିଛି ତା'କୁ କାହିଁ ଦିଶୁନାହିଁ । ସବୁବେଳେ ଖାଲି ମନେ ପଡ଼ୁଚି 'କେହି ତ କାହିଁ ବଞ୍ଚୁ ନାହିଁ ! କେତେ ବେଗି ସବୁ ମରି ଯାଉଛନ୍ତି । ସେ କଣ ତେବେ ବଞ୍ଚିବ ନାହିଁ !' ଗୋଟାଏ ବୁଢ଼ା ଭିକାରୀ ରବ୍ବ ରବ୍ବ ଘଡ଼ିଏ ଛୁଡ଼ି ପଦେ ନେଖାଁ ଗୀତ ବୋଲୁଥାଏ, "ମିଛ ମାୟାରେ ପଡ଼ି ହେଉ ନଡ଼ବଡ଼ ନଡ଼ବଡ଼" । ଶେଷରେ ଖଣ୍ଡେ ଭଙ୍ଗା ଖଞ୍ଜଣିରେ ଟିକିଏ ହାତ ମାରିଦିଏ । ଇସ୍କୁଲ ମାଷ୍ଟର ଜେନାଘର ପିଣ୍ଡାରେ ବସି ଗପ କରୁଥାନ୍ତି—ଯୁଦ୍ଧ ସରି ଆସିଲାଣି, ଜାପାନ ହାରିଗଲେ ବଳେ ଧାନ ଚାଉଳ ପୁଣି ଶସ୍ତା ହେବ ଯେ !

ଆଉ କେବେ ଶସ୍ତା ହେବ ? ସେତେବେଳକୁ ମାଣିକଟା ବଞ୍ଚିଥିଲେ ସିନା ! ତା' ଦିହ ତ କାହିଁକି ବେଶି ବେଶି ଖରାପ ହେଉଛି । ଖାଲି ଚୂଡ଼ାଭଜା ଦି'ଟା ଚୋବେଇ କେତେ ଦିନ ରହିବ ? ଓଳିଏ ଚିତଲା ଭାତ ଖାଇଲେ ଟିକିଏ ଅବା ଟାଣ ହୁଅନ୍ତା ! ସେଇ ପାଞ୍ଚଟି ଟଙ୍କାରୁ ଆଉ ତ ଗୋଟିଏ ବାକି ଅଛି ।

Digitized by srujanika@gmail.com

ମୁକୁନ୍ଦ ସେତିକ ଧରି ଧାନ କିଣି ବାହାରିଲା । ଧାନତକ ମାଣିକ ଜମା ରଖି ବାଣ୍ଟାସାଉ କାମରେ ସେ ଲଗିବ । ଟଙ୍କାକର ଧାନରେ ତ ମାଣିକର କେତେ ଦିନ ଚଳିଯିବ । ପୁଣି ସାଉଘରୁ ତାକୁ ଯାହା ପଡ଼ ମିଳିବ, ସେଥିରେ ଭାଇ ଭଉଣୀଙ୍କର ଅଭାବ ହେବ କାହିଁକି ?

ଟଙ୍କାଟି ଧରି ମୁକୁନ୍ଦ ଧାନ କିଣି ବାହାରିଲା । ଧାନ ଟଙ୍କାକର ବା ପାଖରେ ମିଳୁଚି କୁଆଡ଼ୁ ! କେତେ ଗାଁ ବୁଲିବାକୁ ହେବ, କେତେ ଦୁଆରେ ନେହୁରା ହେବାକୁ ପଡ଼ିବ । ହେଲା ଏବେ । ସେ ତ କିଛି ନିଜ ପାଇଁ କରୁନାଇଁ, ମାଣିକ ପାଇଁ । ମୁକୁନ୍ଦ ଥାଉଁ ଥାଉଁ ତା'ର ସାନ ଭଉଣୀଟା କ'ଣ ଛତରରେ ପଶିବ ! ଦିନ କେତୁଟା ସେ ତାକୁ ଚଳେଇନେଇ ପାରିବ ନାହିଁ ? ଇସ୍କୁଲ ମାଷ୍ଟର ତ କହୁଛନ୍ତି ଯୁଦ୍ଧ ସରି ଆସିଲାଣି । ଏଣିକି ଧାନ ଚାଉଳ ଶସ୍ତା ହେବ । ସେ ଯାକେ ମୁକୁନ୍ଦ ଟିକିଏ ଅଣ୍ଟା ନ ଭିଡ଼ିଲେ ଚଳିବ କିମିତି ?

ଗାଁ ମଶାଣିବାଟ ଆଖିରେ ପଡ଼ିଲା । ମଣିଷ ହାଡ଼ରେ ସେଠି ଆଉ ରାହା ନାହିଁ । ଏଇ ହାଡ଼ଗଦା ଭିତରୁ କଏ ତା'ର ବାପ ମା ଭାଇଙ୍କର ହୋଇଥିବ ! କେତେ ମୁଣ୍ଡ ଦେହରୁ ଅଲଗା ହୋଇ ଦୂରରେ ଗଡ଼ୁଚି । ଆଖି, ନାକ ଯେଉଁଠି ଥିଲା ସେଠି ଖାଲି ଗୋଟାଏ ନେଖାଁ ଗାତ । ଓଠ ନ ଥିବା ଦାନ୍ତଗୁଡ଼ା ବାହାରିପଡ଼ି କି ଭୟାନକ ଦିଶୁଚି ! ପଞ୍ଜରା ହାଡ଼ ମଝିରେ ପେଟ ଅନ୍ତ କିଛି ନାହିଁ ।

ସମସ୍ତେ କ'ଣ ଏହି ହାଡ଼ଗଦାରେ ମିଶିଯିବେ, ଆଉ କିଛି ରହିବ ନାହିଁ ! ରହିବ ନାହିଁ କିମିତି—ତା'ର ବାପ ମା ଭାଇ ଯିବା ଗଲେ; ଏବେ ସେ ତ ଅଛି ! ପୁଣି ମାଣିକ ବି ଅଛି । ଯେ ଯିବାର ଯାଉଛନ୍ତି ଯିବା ପୃଥିଗୋଟାକ ତ ସେମିତି ରହିଛି । ବଞ୍ଚିଥିବାଯାକେ

Digitized by srujanika@gmail.com

ତ ସବୁ ଅଛି, ନାହିଁ କମିତ ? ମୁକୁନ୍ଦର ଗୋଡ଼ ଯାହା ଧୀରେ ଧୀରେ ଚଲୁଥିଲା, ଟିକଏ ଖର ହେଲା । ଅଖା ଟୋକେଇ ଧରି ଆଉ ବି କେତେ ମରଦ ମାଇପେ ସେହି ବାଟେ ଚାଲିଥାନ୍ତି ଧାନ କିଣିବା ପାଇଁ । ମୁକୁନ୍ଦ ତାଙ୍କର ସାଥି ଧରି ଚାଲିଲା ।

ଜଣେ କହିଲା, "କୁସୁପୁର ପାଣ କୁଆଡ଼େ ଖଣି ଭିତରେ ଧାନ ପୋତିଛି । ତା'ର ଘରକୁ ଯିବା ଚାଲ ।"

ଆଉ ଜଣେ କହିଲା, "ସମସ୍ତେ ଜଣକ ଦୁଆରକୁ ଗଲେ ସେ ତ ଘଉଡ଼ି ଦବ ।"

ମୁକୁନ୍ଦକୁ କୁସୁପୁର ଟିକିଏ ପାଖ ପଡ଼ଥାନ୍ତା । ଏ କଥା ଶୁଣି ସେ ବାଟ ଭାଙ୍ଗିଲା । ପୁଣି ସେଇ ଦି'କୋଶ ବାଟ ଚାଲି ଚାଲି ମଣି-ଜଙ୍ଘା ସାଧୁପଣ୍ଡା ଘରକୁ ଯିବ ! ସାହସ ପାଉ ନ ଥାଏ । ଆହୁରି ଦି'ଜଣଙ୍କୁ ସାଥିକରି ଚାଲିଲା ।

ଟଙ୍କାଟିକର ଧାନ ମୁଣ୍ଡାଇ ମୁକୁନ୍ଦ ମଣିଜଙ୍ଘାରୁ ବାହାରିଲା । ନଈ ପାରି ହେଲାବେଳକୁ ଛୁଇ ଲେଉଟି ପଡ଼ିଛି । ବାଟ ଦି'କୋଶ ଯାଇ ଆସିବାକୁ ଦନୁଠାଏ ଛଡଗଲାଣି । ପେଟଟା ଗୁରୁଣ୍ଡି ହୋଇ ଅଇ ଦେଖାଉଛି । ସେ ଚାରି ଖୋଜ ଚାଲି ଟିକଏ ଥକା ମାରି ପୁଣି ଚାଲେ । ମଝିରେ ମଝିରେ ମେଘୁଆ ଖରା ତାଳୁ ଫଟେଇ ଦଉଛି । ଆଉ ଘଣ୍ଟେ ଗହ୍ୱର ପାରିହେଲେ ତାଙ୍କ ଗାଁ ପଡ଼ିବ । ଗାଁ ମଶାଣି ମୁଣ୍ଡ ବରଗଛଟା ତ ହେଇ ଦିଶିଲାଣି । ଟବକାରୁ ପାଣି ମୁନ୍ଦାଏ ପିଇଲା । ମାଣିକ କାଲଠଉଁ ଓଳଏ ତବତ ରାନ୍ଧିବ ।

ପାଣି ପିଇ ମୁକୁନ୍ଦ ଆଉ ସମ୍ଭାଳି ପାରିଲା ନାହିଁ । ଭକ ଭକ ବାନ୍ତି ହୋଇଗଲା । ଧାନ ବୁଜୁଲାଟି ହୁଡ଼ା ଉପରେ ରଖି ଟିକଏ ଆଉଜି ପଡ଼ିଲା । ପୁଣି ମୁଣ୍ଡରେ ଥୋଇ ସେ ଧୀରେ ଧୀରେ ଚାଲିଲା ।

Digitized by srujanika@gmail.com

ଗାଁ ତ ଏଥର ଡାକେ ବାଟ । ଧାନ କଅାଖରୁ ବନ୍ଧ ଉପରକୁ ଉଠିଲା । ତେବେ ଗୋଟାଏ ଗୋଡ଼ ବନ୍ଧ ଉପରକୁ ଥୋଇ ଆର ଗୋଡ଼ଟି ତଳୁ ଉଠାଇ ପାରିଲା ନାହିଁ । ଧାନ ବୁଜୁଳାଟି ମୁଣ୍ଡରୁ ଖସି ବନ୍ଧ ଉପରେ ପଡ଼ିଲା । ପୁଣି ଆସିଲା ଅଇ ଉପରେ ଅଇ । କଛୁ କୁଆଡ଼େ ଦିଶିଲା ନାହିଁ । କାହାକୁ ଦେଖିଲେ ମାଣିକ ପାଖକୁ ଖବର ଦିଅନ୍ତା । ଧାନ କଅାଖରୁ ଥଣ୍ଡା ପବନ ଆସି ତା'ର ଦିହରେ ମୁହଁରେ ଖେଳିଲା । ଖଣ୍ଡେ ଚଲାମେଘ କୁଆଡ଼ୁ ଝିପ୍ସି ଝିପ୍ସି କରି ଗୁରିଟୋପା ପାଣି ଖସେଇ ଦେଇ ଗଲା । ମୁକୁନ୍ଦ ମୁହଁ ଟେକି ଗାଁ ଆଡ଼କୁ ଥରେ ଚାହିଁଲା । ଧାନ ବୁଜୁଳାଟି ଉପରେ ମୁଣ୍ଡ ରଖି ପୁଣି ପଡ଼ିଗଲା । ଆଉ ପାରିଲା ନାହିଁ । ସେହିଠାରେ ତାର ସବୁ ଦିନ ପାଇଁ ବାଟଚଲା ସରିଗଲା ।

ମୂଲିଆମାନେ ବିଲରୁ ଫେରି ଗାଁ ଭିତରେ ଖବର କଲେ । ମାଣିକର ଜର ଛାଡ଼ିଗଲା । ସେ ଚିତଚି ରାନ୍ଧିବ ବୋଲି ଧାନ ବୁଜୁଳଟି ପାଇଲା । ବାଇକୁ ଆଉ ପାଇଲା ନାହିଁ ।

ସେହିଦିନ ଥାନା ଚଉକିଆ ଆସି ଗାଁ ଭିତରେ ଖବର କଲା, ଜାପାନ ଏଥର ହାରିଛି, ସମସ୍ତେ ଦୁଆରେ ଆମ୍ବଡ଼ାଳ ବାନ୍ଧି ବିଜୟ ଉତ୍ସବ ପାଳିବେ । ଥାନାରେ କାଲି ଇସ୍କୁଲ ପିଲାଙ୍କୁ ମିଠେଇ ବଣ୍ଟାହେବ ।

ତେବେ ସବୁରିଠାରୁ ବେଶି ବିଜୟ ଉତ୍ସବ ପାଳିଲା ମୁକୁନ୍ଦ । ମଣିଷ କାନ୍ଧରେ ବୁହା ହୋଇ ଯିବାର ଭାଗ୍ୟ ଏଇ ତାହାର ପ୍ରଥମ, ଏଇ ତାହାର ଶେଷ ।

---

Digitized by srujanika@gmail.com

# ଏବେ ମଧ୍ୟ ବଞ୍ଚିଛି

## ( ୧ )

ବେଣୁଧର କ'ଣ କରିବ କିଛି ଠିକ୍ କରି ପାରିଲା ନାହିଁ ।

ଯେତେବେଳେ ଗାଁଯାକ ଲୋକ ବାହାରନ୍ତି ସାହାଯ୍ୟ କେନ୍ଦ୍ରକୁ ସାହାଯ୍ୟ ପାଇଁ, ବେଣୁଧର ପିଣ୍ଡାରେ ଲୁଚିହୋଇ ଠିଆହୁଏ । ଭାବେ, ଏତେ ଲୋକ ଯାଉଛନ୍ତି, ସମସ୍ତଙ୍କ ଆଗରେ ମୁଁ ହାତ ପତେଇ ଠିଆହୋଇ ମାଗିବାଟା ସୁନ୍ଦର ହେବ ନାହିଁ ।

ଯେଉଁ ଦିନ କେହି ଯାଆନ୍ତି ନାହିଁ, ସେଦିନ ବେଣୁଧର କାନ୍ଥରେ ଲଟକାଇଥିବା ଚିରା କାମିଜଟାକୁ ଦେହରେ ଗଳାଇ ଦେଇ ଖୁବ୍ ସାହସରେ ଦାଣ୍ଡକୁ ବାହାରିପଡ଼େ । ଦାଣ୍ଡ ଡେଇଁ, ବିଲ ପଡ଼ିଆ ଡେଇଁ ଯେତେବେଳେ ସେ ବଡ଼ ବରଗଛ ମୂଳେ ପହଞ୍ଚେ, ଟିକିଏ ବସିପଡ଼େ । ଶ୍ୟାମଳ ପତ୍ର ଗହଳ ତଳେ ଶୀତଳ ପବନ ଟିକିଏ ପାଇ ସେ ଆଖି ବୁଜି ଅନେକ ଭାବେ । ଭାବେ, ସେ ଯିବ, କେନ୍ଦ୍ର ଦୁଆରେ ଠିଆହେବ । କିପରି ଠିଆହେବ ? ହାତ ଯୋଡ଼ିବ ନା ହାତ ଦୁଇଟା ଦୁଇ ପାଖକୁ ଝୁଲାଇ ରଖିବ ? ମୁଣ୍ଡ ଟିକିଏ ନୁଆଁଇବ ନା ମୁଣ୍ଡକୁ ଟାଣ କରି ସିଧା ରଖି ଠିଆହେବ ? ହସିବ ନା ଦୁଃଖରେ ମୁହଁ ଶୁଖାଇ ରହିବ ? କ'ଣ କରିବ କିଛି ସେ ସ୍ଥିର କରିପାରେ ନାହିଁ । ଦସ୍ତୁରେ, ସେଠି ଯେ ଥିବେ ସେ ଯେବେ ଶକ୍ତ ଲୋକ ହୋଇଥିବେ ତେବେ କଣ କରିବାକୁ ହେବ ?

ବସି ବସି, ଦସ୍ତୁର ଦସ୍ତୁର ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠେ, ତାର ଭାବନା ଶେଷ ହୁଏ ନାହିଁ । ଯେଉଁ ଜନଶୂନ୍ୟ ବିଲମାଳ

Digitized by srujanika@gmail.com

ଭିତରେ ଗଛଡ଼ାଳରେ ଯେତେବେଳେ ଦୁଇଟା ଗୁଣ୍ଡୁଚିମୂଷା ଚେଁ ଚେଁ ଶବ୍ଦ କରି ଏ ଡାଳରୁ ସେ ଡାଳକୁ ଧାଇଁନ୍ତି କିମ୍ବା କୁଆ କୋଇଲି ରାବ ଉଠନ୍ତି, ସେ ଆଣ୍ଠୁ ଉପରୁ ମୁଣ୍ଡ ଉଠାଇ ଆଖି ଫିଟାଏ । କିନ୍ତୁ ଦେଖେ ସେହି ନିର୍ଜ୍ଜନର ସଂସାର ତାହାର ଆଗରେ ! ଦୂରର ମରୀଚିକା ପାଣିପରି ଦିଶିଯାଏ । ତାର ଆଶା ଠିକ୍ ସେହିପରି ଦୂରରୁ ଦୂରକୁ ବଢ଼ିଯାଏ । ମୁହଁ ବୁଲେଇ ଦେଖେ ଦୂରରେ ଗଛ ଗହଳରେ ଘିରେଇ ଗାଁ । ସେହିଠାରେ ଗୋଟାଏ ଘର ଉପରେ ଗୋଟାଏ ଜାତୀୟ ପତାକା । ତାହାର ତଳେ ସ୍ୱେଚ୍ଛାସେବକ, ଦେଶସେବକ, ମାତୃପୂଜକ, ଜନନାୟକ, ଦରିଦ୍ର-ସାଥି—ଯେ କେହି ଗୃହଚ୍ଛଳ ଧରି ବାନ୍ଧିବାକୁ ବସିଥିବେ ବୋଲି ମନେକରେ । ଅନ୍ୟଆଡ଼େ ମୁହଁ ବୁଲେଇ ଦେଖେ, ସେହିପରି ଗୁଡ଼ାଏ ଗଛ ଗହଳରେ ବାଗଲପଡ଼ା—ତାହାରି ଭିତରେ ଗୋଟିଏ ଶ୍ରେଷ୍ଠ ଗୃହଦ୍ୱାର । ସେହି ଗୃହଦ୍ୱାର ଭିତରେ କେତୋଟି ପ୍ରାଣୀ, କାହା ପେଟରେ ଅନ୍ନ ନାହିଁ କି କାହା ମୁହଁରେ ହସ ନାହିଁ । ଦିନେ ନୁହେଁ, ଦୁଇ ଦିନ ନୁହେଁ, ପାଞ୍ଚ ଦିନ ହେଲା ସେହି କୁଡ଼ିଆ ତଳେ ଚୁଲି ଜଳି ନାହିଁ, ସେ ଭିତରେ ଅଇଁଠା ପଡ଼ିନାହିଁ । ଏ କଥା ଭାବିଦେଲାବେଳେ ସେ ପୁଣି ଆଖି ବୁଜିଦିଏ । ମାତ୍ର ନିଜ ଭିତରେ ସେ ଦେଖେ ଆଉ ଗୋଟାଏ ଜଗତ୍ ! କି ସୁନ୍ଦର, କି ଜୀବନମୟ ଜଗତ୍ ସେ !! ସେ ଭିତରେ ବେଣୁଧର ବୋଲି ସତର ବର୍ଷର ଯୁବକ କେତେ ଖେଳିଲା, କେତେ ହସି ହସେଇଲା, କେତେ ନାଚି ନଚେଇଲା । ସେ ଗଲା ଘର ଛାଡ଼ି ପାଠ ପଢ଼ିବାକୁ । ଯେଉଁଠାରେ ଦେବତା ମଣିଷର ସାକ୍ଷୀ, ସେହିଠାରେ ସେ ପାଠ ପଢ଼ିଲା । ପାଠ ପଢ଼ି ପଢ଼ି ସେ ଭାବିଲା, ସେ ଜାଗିବ, ଦେଶକୁ ଜଗାଇବ !

Digitized by srujanika@gmail.com

ବେଣୁଧର ଆଖି ଫିଟେଇଲା । ସେ ଦେଖିଲା, ଆଖି ଆଗରେ ପୁଣି ସେହି ପୁରୁଣା ସଂସାର ! ସେହି ଭଙ୍ଗାରୁଜା ସଂସାର ଭିତରେ ତାର ପାଠପଢ଼ା ଅକାଳରେ ଶେଷ ହୋଇଛି, ସେହି ନୀରସ ସଂସାର ଭିତରେ ତାର ଆଶାର ଝରଣା ଶୁଖି ଆସିଛି, ପ୍ରାଣର ରସ ମରିଯାଇଛି । ସେ ଆସିଛି ଭିକ ମାଗି କେତୋଟି ପ୍ରାଣୀକୁ ପୋଷିବ ବୋଲି !

ବେଣୁଧର ପାରିଲା ନାହିଁ । ବରଗଛ ମୂଳେ ଠିଆ ହୋଇ ମୁହଁ ବୁଲେଇଲା ଗାଁ ଆଡ଼କୁ । ଭାବିଲା, "ନା, ମୁଁ ଏପରି ଭାବରେ ଯାଇ ଭିକ ମାଗିବାଟା ସୁନ୍ଦର ହେବ ନାହିଁ । କେହି ଯେତେବେଳେ ଯାଉନାହାନ୍ତି, ମୁଁ ଏକାକୀ ଗଲେ ସେମାନେ ମନେ କରିବେ କ'ଣ ? ବରଂ ଗହଳି ଭିତରେ ପଶି କାନ ପତେଇ ମାଗିଦେଲେ ଚଳିପାରେ ।"

ତଥାପି ବେଣୁଧର କ'ଣ କରିବ ବୁଝି ପାରିଲା ନାହିଁ । ଦିନେ ଗଲା, ଦୁଇ ଦିନ ଗଲା, ଚାରି ଦିନ ଗଲା, ଆଠ ଦିନ ଗଲା— ଦିନ ସତେ ଅବା ପାଣିପରି ବହିଗଲା । ସେ ଦେଖିଲା ସେଇ ସୁଅରେ ତା' ନିଜ ଗାଁର ଶହ ଶହ ମହାପ୍ରାଣୀ ଭାସି ଭାସି, ପେଟ ଦେଖାଇ, କଙ୍କାଳ ଦେଖାଇ, କାନ ଦେଖାଇ ଯାଇ ଲାଗୁଛନ୍ତି ଫିରେଇ ଗାଁର ଚାଉଳବଣ୍ଟା କେନ୍ଦ୍ର ଦୁଆରେ । ଯାହା ପାଉଛନ୍ତି ମୁଠାଏ ତାହା ସିଝେଇ ଖାଇବାକୁ ଦରକାର ପଡ଼ୁନାହିଁ । ଖରାବେଳେ ତଳ ତାତି ଓ ଉପର ତାତି ଭିତରେ ମଝିରେ ଯେ ପେଟ ଚୂଲିଖଣ୍ଡିକ ତାତି ଉଠୁଛି, ତାହା ସେମାନେ ସମ୍ଭାଳି ନ ପାରି ମୁଠା ମୁଠା ଚାଉଳ ବ୍ୟାକୁଳଭାବରେ ପାଟିରେ ଭରତି କରୁଛନ୍ତି ।

ବେଣୁଧର ଘରକୁ ଫେରି ଆଇଲା । ଏପରି ଦିନେ ନୁହେଁ, ଦଶ ଦିନ ଯାଇ ଦଶ ଦିନ ଫେରିଲା । ସବୁ କଥାର ସୀମା ଅଛି;

Digitized by srujanika@gmail.com

ମାତ୍ର ବେଣୁଧରର କଥା ସୀମା ପାର ହୋଇଗଲା । ଘରେ ଯେତେବେଳେ ଖୁଦକଣିଟାଏ ସୁଦ୍ଧା ନାହିଁ, ସେତେବେଳେ କ ସୀମା ଭିତରେ ରହିହୁଏ ? ଶେଷରେ ଦିନେ ସେ କେନ୍ଦ୍ରରେ ଯାଇ ହାଜର ହେଲା ।

( ୨ )

ସିରେଇ ଗାଁର ସାହାଯ୍ୟକେନ୍ଦ୍ର—ଦୁର୍ଭିକ୍ଷ-ରାକ୍ଷସର ଛାୟା ଗୋଟାଏ ବିରାଟ ଯାଦୁଘର । ଯେଉଁ ଦେଶରେ ଯୁଗ ଯୁଗ ଧରି ବିରାଟ ପଥରସ୍ତୂପ ଉପରେ ପତିତପାବନ ବାନା ଉଡ଼ୁଛି, ସେହି ଦେଶର ଲକ୍ଷ ଲକ୍ଷ ନରନାରୀଙ୍କ ଝିକଲଧ୍ୱନି ସେତେବେଳେ ସିରେଇରେ ପ୍ରତିଧ୍ୱନିତ ହେଉଥିଲା । ଯେଉଁ ଦେଶରେ ମଣିଷର ସାକ୍ଷୀରୂପେ ସ୍ୱୟଂ ଦେବତା ବାଟ ଚାଲି ଆସିଥିଲେ ବୋଲି କଥା ଅଛି, ଦୁଃଖଦାରିଦ୍ର୍ୟର ସାକ୍ଷ୍ୟ ନେବାପାଇଁ ସେଇ ଭୂମିର ପରମ ସନ୍ନ୍ୟାସୀ ଉତ୍କଳମଣି ସେହିଠାରେ ଉପସ୍ଥିତ ଥିଲେ ।

ସେତେବେଳେ ସିରେଇ ଗୋଟାଏ ବିରାଟ ମଶାଣି କହିଲେ ଚଳେ । ଦରମରା ମଣିଷଗୁଡ଼ାକ ସେଠାରେ ମରିବେ କି ଜୀଇବେ ଠିକ୍ କରିପାରୁ ନ ଥିଲେ । କାହା ଆଖିରେ ଜ୍ୟୋତି ନ ଥିଲା, କାହା ମୁହଁରେ ହସ ନ ଥିଲା, କାହା ପାଦରେ ବଳ ନ ଥିଲା, କାହା ପେଟରେ ଅନ୍ନ ନ ଥିଲା କି କାହା କଟିରେ କନା ନ ଥିଲା । ଥିଲା କେବଳ ସମସ୍ତଙ୍କ କଣ୍ଠରେ ବିକଟ ସ୍ୱର ! ସମସ୍ତେ କହୁଥିଲେ ଦିଅ-ଦିଅ-ଦିଅ !

ବେଣୁଧର ସେଇ ଭିତରେ ଯାଇ ଠିଆ ହେଲା । ସେ ଶବ୍ଦ ଶୁଣି ତାର କାନ ତାବ୍ଦା ପଡ଼ିଗଲା । ସେ ଦୃଶ୍ୟ ଦେଖି ତା'

Digitized by srujanika@gmail.com

ଆଖିକ ଜାଲୁଜାଲୁଆ ହେଉଥିଲା । ସେ ସେହି ଭିତରେ ଜଣେ ହୋଇ ଠିଆ ହେବାକୁ ଇଚ୍ଛା କଲା ନାହିଁ । ମନେକଲା, ଲୋକଲୋଚନ ଅଗୋଚରରେ କେଉଁଠି ସେ ମିଶିଯାଆନ୍ତା କି, କେଉଁଠି ସେ ଆପଣାର ମୁହଁଟା ଲୁଚାଇ ଠିଆ ହୋଇପାରନ୍ତା କି, କେଉଁଠି ନିଜକୁ ହରାଇ ପାଗଳ ହୋଇ ଯାଆନ୍ତା କି !

ସେ ପଛକୁ ଘୁଞ୍ଚିଆସିଲା । କାହାର ସ୍ନେହପାଳିତ ଗୋଟିଏ ଗଛମୂଳେ ପଥର ଉପରେ ବସିପଡ଼ି ଖାଲି ଦେଖିଲା । ତାକୁ ହେଲା ଗୋଟାଏ ପ୍ରାଚୀନ ବିରାଟ ଜାତି ହଠାତ୍ କପରି ଭିକାରୀ ପାଲଟିଗଲା ! ଜୀବନ ଥାଉ ଥାଉ ଜାତିଟା କପରି ଅପମାନ ବରଣ କରିନେଲା ! ଗୃହୁଁ ଗୃହୁଁ ବାଟ କପରି ସେ ଭୁଲି ଆସିଲା !

ତାକୁ ହେଲା—ଏଇପରି ଏକ ପ୍ରଶାନ୍ତ ଅବସରରେ ସେ ପାଠ ପଢ଼ିଥିଲା । ଚିରଶ୍ୟାମଳ ବକୁଳ ଛୁରୀଅନା ମୂଳେ ଶହ ଶହ ତରୁଣ ପ୍ରାଣରେ ଯେଉଁ ଶିକ୍ଷାର ମନ୍ତ୍ର ପୋତାପାଇଥିଲା, ତାହା କଣ ଶେଷକୁ ବଢ଼ି ଉଠିଲା ଏଇ ଭିକ ମାଗିବା ପାଇଁ ? ବେଣୁଧର କ'ଣ ଶେଷରେ ଏଇଆ ହେବ ବୋଲି ବନ୍ଧ ଧରିଥିଲା ?

ବେଣୁଧର ସେଠି ଅଛି କି ନାହିଁ ବୁଝିପାରିଲା ନାହିଁ । ସେ ନିଜକୁ ଖୋଜିଲା । ତାର ଆଖି ରହିଲା ଭିତରେ, ତାର ମନ ରହିଲା ଭିତରେ, ତାର ଭାବନା ରହିଲା ଭିତରେ— ତାର ଶରୀରଟା କେବଳ ପିରେଇ ଗାଁର ଏକ ଗଛ ମୂଳେ ଥିଲା । ଗୁଡ଼ଉଳ ଧରି ଲୋକେ ଫେରି ଯାଉଛନ୍ତି, ଗହଳ ଝଟମ ଭାଙ୍ଗି ଆସୁଛି, ଖରା କମେ ମାଡ଼ି ଆସୁଛି । କିନ୍ତୁ ବେଣୁଧର ନିଜକୁ ହରେଇ ଗଛମୂଳେ ବସିଛି ।

Digitized by srujanika@gmail.com

( ୩ )

ଝାଞ୍ଜି ପବନର ସ୍ପର୍ଶ କମ୍ପା କପୋତର କରୁଣ ଧ୍ୱନି ବେଣୁଧରର ମୋହ ଭାଙ୍ଗି ପାରିଲା ନାହିଁ । ଗଛଟା ଯେପରି କାହାକୁ କିଛି ନ କହି ଅନେକ ଦିନୁଁ ଠିଆ ହୋଇଛି, ତାହାରି ତଳେ ବେଣୁଧର କାହାକୁ କିଛି ନ ମାଗି ସକାଳପହରୁ ବସିଛି ।

ତାର ଆଗରେ ପ୍ରଶ୍ନ ହେଲା—

"ବାବୁ, ତୋର ଗାଁ ?"

ଦଶ ପାଞ୍ଚ ଥର ଏହିପରି ପଚାରିବା ପରେ ବେଣୁଧର ମୁହଁ ଟେକି ଚାହିଁଲା । ଚାହିଁଲା, ସତେ ଯେପରି କୋଣାର୍କର ଗୋଟାଏ ପଥର ମୂର୍ତ୍ତି କେତେ ଯୁଗ ହେଲା ପାଣି, ପବନ, ଖରା, ତରା ସହି ସହି ପଡ଼ି ରହିଥିଲା, ହଠାତ୍ କାହାର ଡାକରେ ତା'ର ଜଡ଼ ପିଣ୍ଡରେ ପ୍ରାଣ ସଞ୍ଚାର ହେଲା !

ପୁଣି ତାକୁ ପଚରାଗଲା—

"ତୋର ଗାଁ କେଉଁଠି ବାବୁ ? ଚାଲିବୁ ନେଇଚୁ ?"

ବେଣୁଧର ସେଇପରି ଚାହିଁ ରହିଲା ।

ତା'ପରେ, ପ୍ରଶ୍ନ ପଚାରୁଥିବା ବ୍ୟକ୍ତି ଧୀରେ ଧୀରେ ତା ପାଖକୁ ଲାଗି ଆସିଲେ । ଗୋଟିଏ ଶୀତଳ କୋମଳ ହାତର ସ୍ପର୍ଶ ତା' ପିଠିରେ ଲାଗିଲା । ପିଠିର କାମିଜ୍, ଦେହର ଚମ, ଚମ ତଳର ରକ୍ତ ମାଂସ ହାଡ଼ ଭେଦ କରି ସତେ ଅବା ସେହି ସ୍ପର୍ଶ ବେଣୁଧରର କେଉଁ ଅନ୍ତର ଭିତରେ ବାଜିଲା । ତାର ଦେହ ଶୀତେଇ ଉଠିଲା । ତାର ଆଖିପତା ଥରିଲା । ଆଖି କ୍ରମେ ଓଦା ହୋଇ ଆସିଲା ।

Digitized by srujanika@gmail.com

ତା' ପରେ, ଦୁଇ ଫୋଟା ଲୁହ ନଗିଡ଼ ତଳେ ପଡ଼ିଗଲା । ସେ କଣ କହିବ ବୋଲି ଚେଷ୍ଟା କଲା, ଓଠ କୋଣ ଥରି ଆସିଲା ।

ସେ ବ୍ୟକ୍ତି ପଚାରିଲେ—

"ଗୁଡ଼ାଳ ନେଇଚୁ ବାବୁ ?"

"ନା" ଏତିକ କେବଳ ସେ କହିଲା ।

"ନେବୁ ?"

"ନା, ମୁଁ ନେବାକୁ ଆସି ନାହିଁ ।"

"ଆଉ ତେବେ—?"

ବେଣୁଧର ଆଉ ସମ୍ଭାଳି ପାରିଲା ନାହିଁ । ଭେଁ କରି କାନ୍ଦି ଉଠିଲା । ଏତିକ କହିଲା—

"ଏଇପରି ଗଛମୂଳେ ଏଇ ଚରଣତଳେ ପଡ଼ି ବସି କଥା ଶୁଣିଥିଲି—

"ଜୀବନ ଥିଲେ ଭାଇ ପାଇବା ନାଇଁ ହାତ
ମଣିଷ ପରି ହବନେ ମଣିଷ ହୋଇବା ତ ।"

ଏତିକ କହି ବେଣୁଧର ଭାଙ୍ଗିଗଲା ପରି ସେଇ ପାଦତଳେ ପଡ଼ିଗଲା ।

ତା' ପରେ—ତା ପରେ ଅନେକ କ୍ଷଣ ବିତିଗଲା । ବସିପଡ଼ିଥିବା ବେଣୁଧରର ମୁଣ୍ଡରେ ହାତ ଦେଇ ସେଇ ଶାନ୍ତ ଉଦାର ମହାପୁରୁଷ ଦୂରରେ—ଖୁବ୍ ଦୂରରେ—ସୁଦୂର ଚକ୍ରବାଳର ସୀମାରେ ଚକ୍ଷୁ ସ୍ଥିର ରଖି ଅନେକ କ୍ଷଣ ଠିଆ ହେଲେ ।

Digitized by srujanika@gmail.com

ଦୁଇ ଧାର ଅଶ୍ରୁ ତାଙ୍କର କୃଷ୍ଣୋଜ୍ଜ୍ୱଳ ଶ୍ମଶ୍ରୁମଣ୍ଡଳରେ ବନ୍ଦୁ ବନ୍ଦୁ ହୋଇ ଖସୁଥିଲା । ଆଖି ମୁଦ ହୋଇ ଯାଇଥିଲା । ଯେତେବେଳେ ସେ ଆଖି ଫିଟାଇଲେ, ଦେଖିଲେ ସ୍ୱେଚ୍ଛାସେବକ ତାଙ୍କୁ ଡାକୁଛନ୍ତି, ବେଣୁଧର ପଥର ପରି ତଳେ ପଡ଼ିଛି, ତାଙ୍କ ମୁହଁରୁ ପଦେ କଥା ବାହାରିଲା—

"ଏ ଜାତି ଏବେ ମଧ ବଞ୍ଚିଛି ।"

---

# ଅମ୍ବାପଲ୍ଲୀ

## ଏକ

ସେଦିନ ବୈଶାଳୀର ଲିଚ୍ଛବୀ-ସଂଘର ପରିଷଦ କକ୍ଷରେ ତିଳଧାରଣ ପାଇଁ ସୁଦ୍ଧା ସ୍ଥାନ ନାହିଁ । ବୈଶାଳୀର ସାଧାରଣ ଜନତା ଠାରୁ ଆରମ୍ଭ କରି ରାଜପୁରୁଷ, ରାଜକର୍ମଚାରୀ, ଶ୍ରେଷ୍ଠୀ ଓ ବଣିକ ପର୍ଯ୍ୟନ୍ତ ସମସ୍ତେ ଭିଡ଼ ବାନ୍ଧିଛନ୍ତି ଅମ୍ବାପଲ୍ଲୀର ବିଚାର ଶୁଣିବା ପାଇଁ । ଅନ୍ୟ ଅଧିବେଶନମାନଙ୍କରେ ଗଣପରିଷଦର ସମସ୍ତ ସଭ୍ୟ ପ୍ରାୟ ଏକ ସମୟରେ ଉପସ୍ଥିତ ନଥାନ୍ତି । ମାତ୍ର ଆଜି ସମସ୍ତେ ଅଧିବେଶନ ଆରମ୍ଭର ବହୁ ପୂର୍ବରୁ ଆସନ-ପ୍ରଜ୍ଞାପକଙ୍କ ନିର୍ଦ୍ଦେଶ ଅନୁସାରେ ସ୍ୱ ସ୍ୱ ସ୍ଥାନ ଗ୍ରହଣ କରିସାରିଛନ୍ତି । ଗଣଧର (୧) କୋଳାହଳ ଶାନ୍ତ କରିବା ଉଦ୍ଦେଶ୍ୟରେ ଆସନ ଛାଡ଼ି, ଉଠି କହିଲେ,···"ପରମ ମାନ୍ୟାସ୍ପଦ ସଂଘ ଶୁଣିବା ହେଉନ୍ତୁ ! ଆଜି ଛନ୍ଦସଂଖ୍ୟା (୨) ନିରୂପଣ କରିବାର କୌଣସି ପ୍ରୟୋଜନ ନାହିଁ ।

---

(୧) ବାଚସ୍ପତି ବା ସ୍ପୀକର

(୨) କୋରମ୍

Digitized by srujanika@gmail.com

କାରଣ ମୁଁ ଯେତେଦୂର ନଜେ ଦେଖି ପାରୁଛି, ପରିଷଦ କକ୍ଷରେ ଲିଚ୍ଛବୀ ସଂଘର ପ୍ରାପ୍ତ ସମସ୍ତ ସଭ୍ୟ ଉପସ୍ଥିତ ଅଛନ୍ତି । ଅତଏବ ଗଣପୂରକଙ୍କୁ (୩) ମୁଁ କର୍ମବାଚ (୪) ପାଇଁ ଅନୁରୋଧ କରୁଅଛି । ଗଣଧରଙ୍କ ଆଦେଶକ୍ରମେ ଗଣପୂରକ ସେପକ୍ଷର ଆସନ ଛାଡ଼ି, ଉଠି କହିଲେ···"ପରମ ମାନ୍ୟାସ୍ପଦ ଗଣଧର ଓ ସଂଘର ସଦସ୍ୟ ମହୋଦୟଗଣ ଶୁଣିବାକୁ ଅବଧାନ ହେଉ ! ଆଜ ଏହି ପରିଷଦ କକ୍ଷରେ ବୈଶାଳୀର ଉଦ୍ୟାନପାଳ କନ୍ୟା ଅମ୍ବାପାଲୀ ସମ୍ବନ୍ଧରେ ଜ୍ଞପ୍ତି ଆଗତ କରିବା ପୂର୍ବରୁ, ଆପଣମାନେ ପ୍ରଥମେ ଉଦ୍ୟାନପାଳ ଅସିତବର୍ଣ୍ଣଠାରୁ ଅମ୍ବାପାଲୀର ବୃତ୍ତାନ୍ତ ଶୁଣିବା ହେଉନ୍ତୁ ।"

ପରିଷଦ କକ୍ଷରେ, ଗଣଧରଙ୍କ ଆସନ ଓ ଅର୍ଦ୍ଧବୃତ୍ତାକାରରେ ସନ୍ନିବିଷ୍ଟ ସଦସ୍ୟମାନଙ୍କ ଆସନ ମଧ୍ୟସ୍ଥିତ ଭୂମିରେ, ଅସିତବର୍ଣ୍ଣ ଠିଆ ହୋଇ ସଂଘର ସମବେତ ସଦସ୍ୟମାନଙ୍କ ଆଡ଼େ ଚାହିଁ କହିଲା, "ବୈଶାଳୀ ଉପକଣ୍ଠ ଆମ୍ର-ଉପବନର ମୁଁ ରକ୍ଷକ । ଆଜକୁ ଷୋଳ ବର୍ଷ ତଳେ, ହେଇ ସେଦିନ ପରି ସବୁ ମନେ ପଡ଼ୁ ଯାଉଛି । ସକାଳ ହୋଇନାହିଁ । ପକ୍ଷୀର କାକଳୀରେ ନିଦ ଭାଙ୍ଗିଗଲା । ପୂର୍ବ ଆକାଶରେ ସିନ୍ଦୂର ଫାଟିଛି । ବଉଳର ମହକରେ ପବନ ଭାରି ହୋଇ ଉଠିଛି । ହଠାତ୍ ଶୁଣିଲି ଗୋଟିଏ ସଦ୍ୟଜାତ ଶିଶୁର ଚିତ୍କାର । ନିଃସନ୍ତାନ ମୁଁ, ଜୀବନସାରା ଗୋଟିଏ ସନ୍ତାନର କାମନା କରି ଆସିଛି କେବଳ । ଏ କ'ଣ ବିଧିଦତ୍ତ ? ଆଜ ବି ମନେପଡ଼େ,

(୩) ଚପ୍ ହ୍ୱିପ୍ ବା ଦଳପତି

(୪) ପ୍ରସ୍ତାବ ଆଗତ କରିବା ବା ସଂଘ ଅଧିବେଶନର କାର୍ଯ୍ୟ ଆରମ୍ଭ କରିବା ।

( ପ୍ରାଚୀନ ଭାରତର ଗଣତନ୍ତ୍ର ବା ସଂଘରାଜ୍ୟରେ ଏ ଶବ୍ଦଗୁଡ଼ିକ ପ୍ରଚଳିତ ଥିଲା ।—ଲେଖକ )

Digitized by srujanika@gmail.com

ଗୋଟିଏ ଆମ୍ବଗଛ ତଳେ, କେଉଁ ହତଭାଗିନୀ ଅନନ୍ୟସୁନ୍ଦର ଶିଶୁଟିଏ ଫିଙ୍ଗି ଦେଇ ଯାଇଛି । ନାହ୍ନ ସୁଦ୍ଧା କଥା ହୋଇନାହିଁ । କିଛି ନ ବୁଝି ନ ଶୁଝି ଶିଶୁଟିକୁ କୋଳରେ ତୋଳନେଲ—ହେଉ ପଛେ ସେ କେଉଁ କୁଳଟାର କଳଙ୍କ, ହେଉ ପଛେ ଅଭିଶାପ··· ଆଜକୁ ଷୋଳବର୍ଷ ତଳେ । ସେଇ ଆଜ ଅମ୍ବାପଲ୍ଲୀ ।"

ଘାପଙ୍କର ଆସନ ଛାଡ଼ି ଉଠି କହିଲେ···"ସେଇ ଅମ୍ବାପଲ୍ଲୀ ଆଜ ବୈଶାଳୀର ଆତଙ୍କ । ଆଜକୁ ଷୋଳବର୍ଷ ତଳେ, କେଉଁ ସେ ବସନ୍ତ-ରାତିର ବସ୍ତୁତ-ଲଗ୍ନ ମୁହୂର୍ତ୍ତରେ ଏଇପରି ଜନ୍ମିଥିଲା ବୈଶାଳୀର ମୂର୍ତ୍ତିମନ୍ତ ଅଭିଶାପ !"

ଗଣଧର ପ୍ରଶ୍ନ କଲେ···"କିନ୍ତୁ ଅମ୍ବାପଲ୍ଲୀ କାହିଁ ?"

ଏଇ ପରିଷଦ କକ୍ଷ ବାହାରେ ଶୁଭେ ଅମ୍ବାପଲ୍ଲୀର ନୂପୁର ଶିଞ୍ଜନ । ସମବେତ ଜନତା ମଧ୍ୟରୁ ଅସ୍ପଷ୍ଟ କଳରବ ଉଠିଲା··· ଅମ୍ବାପଲ୍ଲୀ, ଏଇ ଅମ୍ବାପଲ୍ଲୀ !

ମାଲାମ୍ବରା ଅମ୍ବାପଲ୍ଲୀ, ଲକ୍ଷାରଞ୍ଜିତ ପାଦରେ ସ୍ୱର୍ଣ୍ଣ ଜାଳମ୍ବ ମଞ୍ଜୁସ୍ୱର ମଞ୍ଜୀର, କ୍ଷୀଣକଟି ବେଷ୍ଟନ କରି ଗୁରୁ ନିତମ୍ବ ଚୁମ୍ବନ କରିଛି ମେଖଳା, ଦୁଇ ମୃଣାଳ ବାହୁରେ ସ୍ୱର୍ଣ୍ଣ କେୟୂରର ପଦ୍ମକଳିକା ସ୍ପର୍ଶ କରିଛି ଉନ୍ନତ ବକ୍ଷ-କୋରକ, ବଙ୍କିମ ଦୁଇ ଭ୍ରୂଲତା ତଳେ ମଦଭରା ଦୁଇ ମୃଗ ଆଖି, ଯେପରି ବଙ୍କିମ ପୁଷ୍ପଧନୁରେ ମଦନର ଟଙ୍କାର ।

ଘ.ପଙ୍କର କହିଲେ···"ଏହି ଅମ୍ବାପଲ୍ଲୀ ଲାଗି ବୈଶାଳୀର ସାଧାରଣତନ୍ତ୍ର ସଙ୍କଟାପନ୍ନ । ବିଦେହ, ମଲ୍ଲ ଓ କାଲାମ ପ୍ରଭୃତି ରାଜ୍ୟଗୁଡ଼ିକ ସମସ୍ତେ ଅମ୍ବାପଲ୍ଲୀ ପାଇଁ ଲାଳାୟିତ । ସେଥିପାଇଁ ଦରିଦ୍ର ଉଦ୍ୟାନପାଳ-କନ୍ୟା ଅମ୍ବାପଲ୍ଲୀର ଐଶ୍ୱର୍ଯ୍ୟ ବୈଶାଳୀର ରାଜ-

Digitized by srujanika@gmail.com

କୋଷକୁ ସୁଦ୍ଧା ଉପହାସ କରିପାରେ । ତଦୁପରି ଆମ୍ଭମାନଙ୍କ ଗୁପ୍ତଚରର ସମ୍ବାଦ ଯଦି ସତ୍ୟ ହୋଇଥାଏ, ମଗଧରାଜ ବିମ୍ବିସାର ଅମ୍ବାପାଲୀକୁ ବଳାତ୍କାରରେ ମଗଧର ରାଜଅନ୍ତଃପୁରକୁ ନେବାପାଇଁ ଉଦ୍ୟମ ଲଗାଇଛନ୍ତି । ବିମ୍ବିସାର ଯେପରି ଲମ୍ପଟ, ତାଙ୍କ ପକ୍ଷରେ ଏହା ଅସମ୍ଭବ ହୋଇ ନପାରେ । କିନ୍ତୁ ତାହାହିଁ ଯଦି ହୁଏ, ବୈଶାଳୀ ସହିତ ରାଜଗୃହର ଯୁଦ୍ଧ ଅନିବାର୍ଯ୍ୟ, କାରଣ ବୈଶାଳୀ ଏ ହୀନ ଦସ୍ୟୁବୃତ୍ତିର ନିଶ୍ଚିତ ପ୍ରତିରୋଧ କରିବ । ମାତ୍ର ଏହାର ପରିଣତି ସୁସ୍ପଷ୍ଟ ! ମଗଧର ବିପୁଳ ସାମରିକ ଶକ୍ତି ଆଗରେ ବୈଶାଳୀ ବା କେଉଁ ଦଣ୍ଡ ଟିକିବ ? ତେଣୁ ମୋର ଆପଣମାନଙ୍କ ସମ୍ମୁଖରେ ଜ୍ଞପ୍ତି ହେଉଛି, ଚିରାଚରିତ ବିଧି ଅନୁସାରେ ଅମ୍ବାପାଲୀକୁ ଏଠାରେ ଗଣିକା ଘୋଷଣା କରାଯାଉ । ଅମ୍ବାପାଲୀ ହେଉ ଗଣଭୋଗ୍ୟା, ଏ ଜ୍ଞପ୍ତି ପ୍ରତିଜ୍ଞା(୧)ରେ ପରିଣତ ହେବା ପୂର୍ବରୁ ମୁଁ ଏ ସମ୍ବନ୍ଧରେ ଶଳାକା (୨) ଗ୍ରହଣ ପାଇଁ ଅନୁରୋଧ କରୁଛି ।"

ବ୍ୟାଧଗ୍ରୀତା ହରିଣୀ ପରି ଅମ୍ବାପାଲୀ ଥରେ ଉଦ୍ଧିଳ ସଂଘର ସମବେତ ସଦସ୍ୟମାନଙ୍କ ଆଡ଼େ । ଏହି ସମୟରେ ଅନ୍ୟତମ ସଦସ୍ୟ ଶୀଳଭଦ୍ର ଉଠି କହିଲେ···"ଏ ଜ୍ଞପ୍ତି ଉପରେ ଶଳାକାଗ୍ରହଣ ନିଷ୍ପ୍ରୟୋଜନ । ଏହା ସର୍ବବାଦୀସମ୍ମତ, ବୈଶାଳୀର ସ୍ୱାର୍ଥ ପାଇଁ ଅମ୍ବାପାଲୀ ସୁଦ୍ଧା ଏ ଜ୍ଞପ୍ତିର ବିରୋଧ କରିବେ ନାହିଁ ।"

ଅତଏବ ଶଳାକାଗ୍ରହଣର ଆଉ କୌଣସି ପ୍ରୟୋଜନ ପଡ଼ିଲା ନାହିଁ । କରତାଳି ଦ୍ୱାରା ସମସ୍ତେ ଏହା ଅନୁମୋଦନ କଲେ ।

---

(୧) ପ୍ରତିଜ୍ଞା—ରିଜଲ୍ୟୁସନ

(୨) ଶଳାକା—ଭୋଟ

Digitized by srujanika@gmail.com

ଗଣଧର ଏହାପରେ ଉଠି କହିଲେ···"ପରମ ମାନ୍ୟାସ୍ପଦ ସଂଘର ସଦସ୍ୟଗଣ, ଆପଣମାନଙ୍କ ନିର୍ଦ୍ଦେଶରେ ମୁଁ ଘୋଷଣା କରୁଛି ଅମ୍ବାପାଲୀ ଆଜଠାରୁ ହେବ ଗଣଭୋଗ୍ୟା ଗଣିକା ! ସୌନ୍ଦର୍ଯ୍ୟ ତାର ଅପରାଧ ।"

## ଦୁଇ

ଏଠାରେ ଯେଉଁ ସମୟର ଘଟଣା ବର୍ଣ୍ଣିତ ହେଉଅଛି, ସେହି ସମୟରେ ଶାକ୍ୟ, କୋଳିୟ, ବିଦେହ, ମଲ୍ଲ, ପିପ୍ପଳୀବନର ମୋରିୟ, ବୁଲି, କାଲାମ ଓ ଭଗ ପ୍ରଭୃତି ସଂଘଶାସିତ ରାଜ୍ୟ-ମାନଙ୍କରେ ଏହାହିଁ ଥିଲା ଚିରାଚରିତ ବିଧି । ଯେଉଁ ନାରୀର ସୌନ୍ଦର୍ଯ୍ୟ ରାଜ୍ୟରେ ଅନ୍ତର୍ଦ୍ୱନ୍ଦ୍ୱ ବା ଅନ୍ୟ ରାଜ୍ୟ ଆକ୍ରମଣର ହେତୁ ହେବ, ସେ ନାରୀ ଗଣଭୋଗ୍ୟା ରୂପେ ହେବ ଗଣିକା । ବୈଶାଳୀ-ସଂଘ ତେଣୁ ଏହି ନିୟମରେ ଅମ୍ବାପାଲୀକୁ ଗଣିକା ବୋଲି ଘୋଷଣା କରିଥିଲେ । ଅମ୍ବାପାଲୀ ଗଣିକା ହେଲେହେଁ ବୌଦ୍ଧ ଯୁଗର ଜଣେ ସ୍ମରଣୀୟା ବିଦୁଷୀ ନାରୀ । "ଥେରୀ ଗାଥା"ରେ ଅମ୍ବାପାଲୀର ସ୍ୱରଚିତ ଗୋଟିଏ ଆତ୍ମକାହାଣୀମୂଳକ କବିତାରେ ଏହିପରି ଗୋଟିଏ ଗଣିକାର ବ୍ୟର୍ଥ ନାରୀତ୍ୱର ଅଶ୍ରୁଳ ଚିତ୍ର ବର୍ଣ୍ଣିତ ହୋଇଅଛି । ସଂଘର ସ୍ୱାର୍ଥ ପାଇଁ ଅମ୍ବାପାଲୀ ନିଜର ନାରୀତ୍ୱ ଓ ମାତୃତ୍ୱର ଯେଉଁ ଲୋଭନୀୟ ସମ୍ଭାବନା, ଆଶା ଓ ଆକାଙ୍କ୍ଷା ସେଦିନ ବୈଶାଳୀର ପରିଷଦ କକ୍ଷରେ ବିସର୍ଜନ ଦେଇଥିଲା, ତାହା "ଥେରୀ ଗାଥା"ର ଉକ୍ତ କବିତାରେ ଅତି ମର୍ମସ୍ପର୍ଶୀ ଭାବରେ ପ୍ରକାଶ ପାଇଛି ।

ଏ କାଳର ଗଣିକାମାନେ ଯୌବନର ପଣ୍ୟ ଧରି କେବଳ କାଳାତିପାତ କରୁ ନ ଥିଲେ । କାବ୍ୟ, ସାହିତ୍ୟ, ସଙ୍ଗୀତ ଓ ନୃତ୍ୟ ପ୍ରଭୃତି କଳାରେ ସେମାନଙ୍କର ଅତୁଳନୀୟ କୁଶଳତା ଥିଲା । ପୁଣି

Digitized by srujanika@gmail.com

ଏମାନଙ୍କର ସମ୍ପଦ ଯେ କୌଣସି ରାଜାର ସମ୍ପଦକୁ ସୁଦ୍ଧା ଉପହାସ କରି ପାରୁଥିଲା । ବୌଦ୍ଧ "ବିନୟପିଟକ"ରେ ବର୍ଣ୍ଣିତ ଅଛି, କାଶୀ ନଗରୀର ଗଣିକା 'ଅର୍ଦ୍ଧକାଶୀ'ର ଗୋଟିଏ ରାତିର ଆୟ, କାଶୀ ରାଜାଙ୍କର ଗୋଟିଏ ଦିନର ରାଜସ୍ୱ ସହିତ ସମାନ । ମାତ୍ର ଏ ଦୁର୍ମୂଲ୍ୟର ବିନିମୟରେ ଉପଯୁକ୍ତ ସଂଖ୍ୟାରେ ନାଗର ନ ମିଳିବାରୁ, 'ଅର୍ଦ୍ଧକାଶୀ' ମୂଲ୍ୟର ପରିମାଣ ଅଧା କରି ଦେଇଥିଲା । ସେଥିପାଇଁ ଓ ସେହିଦିନଠାରୁ ସେ ଅର୍ଦ୍ଧକାଶୀ ନାମରେ ପରିଚିତ ।

## ତିନି

ବୈଶାଳୀ ନଗରୀରେ ଅମ୍ବାପାଲୀର ପ୍ରାସାଦୋପମ ଅଟ୍ଟାଳିକାର ଶୟନ କକ୍ଷ । ଅମ୍ବାପାଲୀ ପ୍ରସୂତି-ବେଦନାରେ ସେହି କକ୍ଷର ଗୋଟିଏ ପଲଙ୍କ ଉପରେ ଅର୍ଦ୍ଧଚେତନ ଅବସ୍ଥାରେ ପଡ଼ିଛି । ଅମ୍ବାପାଲୀର ଗୋଟିଏ ପରିଚାରିକା ଶିରୀମା ନବଜାତ ଶିଶୁଟିକୁ କୋଳରେ ଧରି ଠିଆହୋଇ ରହିଛି ଅମ୍ବାପାଲୀର ପଲଙ୍କ ପାଖରେ, ଯେପରି କ'ଣ କହିବ ବୋଲି ।

ଶିରୀମା ଡାକିଲା···"ମହାଦେଈ !"

ଅମ୍ବାପାଲୀ କ୍ଳାନ୍ତ ଆଖି ଦୁଇଟି ଅଳ୍ପ ମେଲି ରୁକ୍ଷ କଣ୍ଠରେ କହିଲା···"ଆଉ ଠିଆହୋଇ ରହିଲୁ କାହିଁକି ଶିରୀମା ? ଯା, ଫିଙ୍ଗିଦେଇ ଆ ରାସ୍ତା କଡ଼ରେ । ଆଉ ଟିକିକ ପରେ ରାତି ପାହିଯିବ ।"

ଶିରୀମା କହିଲା···"କି ଅନିନ୍ଦ୍ୟସୁନ୍ଦର ରାଜକୁମାର ପରି ଦେଖାହେଉଛି ! ଠିକ୍ ମହାରାଜ ବିମ୍ବିସାରଙ୍କ ପରି । ଫିଙ୍ଗିଦେବା ପାଇଁ ସତରେ ମୋର ମନ ଆଦୌ ବଳୁ ନାହିଁ ମହାଦେଈ !"

Digitized by srujanika@gmail.com

ଅମ୍ବାପାଲୀର ନିର୍ଯ୍ୟାତିତ ଓ ମଥିତ ମାତୃତ୍ୱ ପୁଣି ସେପରି ମୁଣ୍ଡଟେକି ଉଠୁଥିଲା । ଶିଖିମା ଅନୁନୟ ସ୍ୱରରେ କହିଲା···"ନିଅ କୋଳକୁ, ନିଅ ମହାଦେବି !"

ଦଳିତା ସର୍ପିଣୀ ପରି ଅମ୍ବାପାଲୀ ଗର୍ଜି ଉଠିଲା···"ନା, ନା, ସେ କଳଙ୍କ । ସେ ବନ୍ଧନ । ଏ ଜୀବନରେ ସେ ଅଭିଶାପ । ଏଇ ମୁହୂର୍ତ୍ତରେ ତାକୁ ଫିଙ୍ଗିଦେଇ ଆ ଶିଖିମା । ଝିଅଟାଏ ହୋଇଥିଲେ ବରଂ ରଖିଥାନ୍ତି, କିନ୍ତୁ ପୁଅଟାଏ । ଫିଙ୍ଗିଦେଇ ଆ ଶିଖିମା ! ଏଇ ମୁହୂର୍ତ୍ତରେ ! ମୁଁ ଆଜି ତୋର ଯୁକ୍ତି ଶୁଣିବାକୁ ଚାହେଁ ନା !"

ଶିଖିମା କୋଳରେ ଶିଶୁଟି କାନ୍ଦି ଉଠିଲା । ଅମ୍ବାପାଲୀ ଚିତ୍କାର କରି ଉଠିଲା···"ମୁହଁରେ ତାର ଲୁଗା ଚାପି ଦେ ଶିଖିମା ! ସର୍ବନାଶ ! ଯା--ଅଲକ୍ଷଣୀ, ଆଜି ଠିଆହୋଇ ରହିଲୁ କାହିଁକି ?"

ଶିଖିମା ଶିଶୁଟିକୁ ଆଉରି ନିବିଡ଼ କରି ଚାପିଧରି ବାହାରକୁ ଚାଲିଗଲା । ଅମ୍ବାପାଲୀ ଆଜି ନେଲା ଯେପରି ନିଜର ପରିତ୍ୟକ୍ତ ଓ ଉପେକ୍ଷିତ ଜନ୍ମର ପ୍ରତିଶୋଧ !

ମାତ୍ର ସେ ପ୍ରତିଶୋଧରେ ଅମ୍ବାପାଲୀର ଦୁଇ ଆଖିରେ ଲୁହର ଏ ଝରଣା କାହିଁକି ?

## ଚାରି

ସେଦିନ ରାତିର ସେଇ ପରିତ୍ୟକ୍ତ ଶିଶୁ ପରବର୍ତ୍ତୀ କାଳରେ ହୋଇଥିଲା ବୈଦ୍ୟଶାସ୍ତ୍ରରେ ଧନ୍ୱନ୍ତରୀ—ଗୌତମ ବୁଦ୍ଧଙ୍କର ଶିଷ୍ୟଶିରୋମଣି 'ଜୀବକ' । କିନ୍ତୁ ବୈଶାଳୀର ରାଜପଥରୁ କେଉଁ ନିଃସନ୍ତାନର ଆଶ୍ରୟ ଓ ପ୍ରତିପୋଷଣରେ ଅମ୍ବାପାଲୀର ପରିତ୍ୟକ୍ତ, ନାମହୀନ, ପରିଚୟହୀନ ଶିଶୁ ଭବିଷ୍ୟତ କାଳରେ ସେ ହେଲା

Digitized by srujanika@gmail.com

ବୈଦ୍ୟରାଜ ଜୀବକ, ତାର କୌଣସି ଧାରବାହିକ ଇତିହାସ ମିଳିବ ନାହିଁ ଅବଶ୍ୟ !

## ପାଞ୍ଚ

ତାର ବହୁ ବର୍ଷ ପରେ......

ଅମ୍ବାପାଳୀର କେଳି ମନ୍ଦିର ପଡ଼ିଛି ଶୂନ୍ୟ ଓ ନିର୍ଜନ । ଅମ୍ବାପାଳୀର ଯୌବନ-ବସନ୍ତର ନବପଲ୍ଲବିତ ବୃକ୍ଷଶାଖା, ଯେଉଁ ବିଳାସୀମାନଙ୍କର କଳରବରେ ମୁଖରିତ ହୋଇ ଉଠିଥିଲା, ସେମାନେ ଆଜି ନୂତନ ବସନ୍ତର ସନ୍ଧାନରେ, କିଏ ଯାଇ କେଉଁଠି ! କି ଏକ ଦାରୁଣ ବ୍ୟାଧିରେ ଅମ୍ବାପାଳୀ ପଙ୍ଗୁ, ଚଳଚ୍ଛକ୍ତି-ରହିତା । ନୃତ୍ୟଚପଳ ପାଦ ଦୁଇଟିରେ ପାଷାଣର ଜଡ଼ ନିର୍ଜୀବତା, ହେମ ଗୌର ଦେହରେ ମୃତ୍ୟୁର କାଳିମା, ବନହରିଣୀର ଦୁଇ ଆଖିରେ ମାଡ଼ିଯାଇଛି ପରଳ । ଏହି ସୁଯୋଗରେ ପଦ୍ମାବତୀ ହୋଇଛି ତେଣୁ ବୈଶାଳୀର ନାୟିକା । ଯେଉଁଆଡ଼େ ଶୁଣ ସେ ଆଡ଼େ ଖାଲି ପଦ୍ମାବତୀର ପ୍ରଶଂସା, ଅମ୍ବାପାଳୀ ଯେପରି ନାହିଁ ବା କେବେ ନଥିଲା ।

## ଛଅ

ରୋଗଶଯ୍ୟା ଉପରେ ଅମ୍ବାପାଳୀର ବ୍ୟାଧିଗ୍ରସ୍ତ କୁତ୍ସିତ ଦେହ ପଡ଼ିଛି ଅଥର୍ବ, ଜଡ଼ ହୋଇ । ଜୀବକ ଅମ୍ବାପାଳୀର ଆଖି ଦୁଇଟିରେ କି ଗୋଟିଏ ଅଞ୍ଜନ ପ୍ରଲେପ କରୁଛନ୍ତି, ଶଯ୍ୟାର ଗୋଟିଏ ପାଖରେ ବସି । ଅମ୍ବାପାଳୀ ଯନ୍ତ୍ରଣାକ୍ଲିଷ୍ଟ କଣ୍ଠରେ ପାଗଳିନୀ ପରି ଚିତ୍କାର କରି ଉଠିଲା..."ମୋତେ ଗରଳ ଦିଅ ଜୀବକ ! ଏ ଜୀବନରେ ଆଉ ପ୍ରୟୋଜନ ନାହିଁ । ଜାଣେ ଜୀବକ ! ସେ ଅପହୃତ ଯୌବନ ଆଉ ଫେରିବ ନାହିଁ, ସେ ଲୁଣ୍ଠିତ ଦୃଷ୍ଟିଶକ୍ତି ଆଉ ଫେରିବ ନାହିଁ । ବୃଥା ତମର ଏ ଆୟାସ !"

Digitized by srujanika@gmail.com

ଜୀବକ ଅମ୍ବାପଲ୍ଲୀର କପାଳ ଉପରେ ଧୀରେ ଧୀରେ ହାତ ବୁଲାଇ କହିଲେ···"ଶାନ୍ତ ହୋଇ ଶୋଇପଡ଼ ମା, ମୁଁ ପ୍ରତିଶ୍ରୁତି ଦେଉଛି, ମୁଁ ପୁଣି ଫେରାଇ ଆଣିବ ତମର ପୂର୍ବ ସ୍ୱାସ୍ଥ୍ୟ ଓ ଯୌବନ ।"

ଧନ୍ୱନ୍ତରୀ ଜୀବକଙ୍କର ଅଦ୍ଭୁତ କ୍ଷମତା । ତାଙ୍କର ପ୍ରତିଶ୍ରୁତି ମିଥ୍ୟା ହେବାର ନୁହେଁ । ସେହି ବିଶ୍ୱାସରେ ଅମ୍ବାପଲ୍ଲୀ ନିଜକୁ ସମ୍ପୂର୍ଣ୍ଣ ଭାବରେ ସମର୍ପଣ କରି ଦେଇଛି ଜୀବକଙ୍କ ହାତରେ । ଏ କି ପୁଲକ ! ଏ କି ଶୀତଳତା ! ଜୀବକଙ୍କର ସ୍ପର୍ଶରେ ଏ କି ଯାଦୁ ! ମା ଶବ୍ଦ ଉଚ୍ଚାରଣରେ ଏ କି ଅପୂର୍ବ ମମତା ! ଅମ୍ବାପଲ୍ଲୀ ଦୁଇ ଅନ୍ଧ-ଆଖି ମେଲି ଥରେ ଚାହିଁଲା, ଜୀବକଙ୍କୁ ଦେଖିବା ପାଇଁ । ମାତ୍ର ସବୁ କିପରି ଦେଖାଯାଏ ଝାପ୍‌ସା, କୁହେଳିର ପର୍ଦ୍ଦା ପରି । ଅମ୍ବାପଲ୍ଲୀର ମନେ ପଡ଼ିଗଲା—ସେଦିନ ସେଇ ସଦ୍ୟଜାତ ଶିଶୁକୁ ଥରେ ବକ୍ଷ ଉପରେ ଚାପିଧରି ମାତୃତ୍ୱର ଯେଉଁ ସ୍ନିଗ୍ଧ ଅନୁଭୂତିରେ ଅମ୍ବାପଲ୍ଲୀର ପ୍ରାଣ ସିକ୍ତ ହୋଇ ଉଠିଥିଲା, ଆଜି ଜୀବକଙ୍କର ସ୍ପର୍ଶରେ ଯେପରି ପୁଣି ଜାଗି ଉଠୁଛି ସେଇ ଅନୁଭୂତି !

ଅମ୍ବାପଲ୍ଲୀ ପଚାରିଲା···"ତୁମେ କିଏ ଜୀବକ ?"

ଜୀବକ ଉତ୍ତର ଦେଲେ···"ମୁଁ ଭିକ୍ଷୁ ଜୀବକ । ଏପରି ବିଚଳିତ ନ ହୋଇ ଶୋଇପଡ଼ ମା ! ମୁଁ ନିର୍ଭର ପ୍ରତିଶ୍ରୁତି ଦେଉଛି, ତମେ ଯଥାଶୀଘ୍ର ରୋଗମୁକ୍ତ ହେବ ।"

ଅମ୍ବାପଲ୍ଲୀ ଏ ଉତ୍ତରରେ ସନ୍ତୁଷ୍ଟା ନହୋଇ ପୁଣି ପଚାରିଲା ···"ମାତ୍ର ଏ ତ ତମର ପରିଚୟ ନୁହେଁ ଜୀବକ ! କୁହ ଜୀବକ, କିଏ ତମେ ?"

Digitized by srujanika@gmail.com

ଜୀବକ ମ୍ଳାନଭାବରେ ହସି ଉତ୍ତର ଦେଲେ···"ଭିକ୍ଷୁର ପରିଚୟ ଭିକ୍ଷୁ । ତାର ପିତା ନାହିଁ, ମାତା ନାହିଁ, ବଧୂ ନାହିଁ, ପୁତ୍ର ନାହିଁ, କନ୍ୟା ନାହିଁ, ସଂସାର ନାହିଁ । ସେ କେବଳ ଭିକ୍ଷୁ !"

ଅମ୍ବାପାଲୀ ଅନୁନୟ ସ୍ୱରରେ କହିଲା···"କିନ୍ତୁ ତମେ ମୋ ପାଖରେ ଦଣ୍ଡେ ବସ ଜୀବକ ! ଉଃ···ସେ ଆଖି ଦୁଇଟାରେ ଭାରି ଯନ୍ତ୍ରଣା । ଆଉ ଥରେ ସେମିତି କପାଳ ଉପରେ ତମର ହାତ ବୁଲାଇ ନିଅ ଜୀବକ !"

ଜୀବକ ବାଧ୍ୟ ଶିଶୁ ପରି ଅମ୍ବାପାଲୀର ଉତ୍ତପ୍ତ କପାଳ ଉପରେ ହାତ ବୁଲାଇଲେ । ଗଭୀର ତୃପ୍ତି ଓ ପ୍ରଶାନ୍ତିରେ ଅମ୍ବାପାଲୀର ଅନ୍ତଃସ୍ଥଳ ଯେପରି ସ୍ନିଗ୍ଧ ହୋଇ ଉଠିଲା । ଜୀବକ ଅମ୍ବାପାଲୀର କପାଳ ଉପରେ ହାତ ବୁଲାଉ ବୁଲାଉ କହିଲେ···"ସୃଷ୍ଟିର ଏଇ ତ ଚରମ ସତ୍ୟ ମା !"

ଅମ୍ବାପାଲୀ ପ୍ରଶ୍ନ କଲା···"କି ସତ୍ୟ ଜୀବକ ?"

ଜୀବକ କହିଲେ···"ଏଇ ବ୍ୟାଧି, ବାର୍ଦ୍ଧକ୍ୟ; ଏଇ ଦୁଃଖ ! ଯୌବନ କ୍ଷଣସ୍ଥାୟୀ ମା !"

ଅମ୍ବାପାଲୀ ପ୍ରଶ୍ନ କଲା···"ତା' ହେଲେ ?"

ଜୀବକ କହିଲେ···"ଭୋଗରେ ଜୀବନର ସେ ନାଗପାଶରୁ ମୁକ୍ତି ନାହିଁ ମା ! ତ୍ୟାଗ ତେଣୁ ଜୀବନର ଏକମାତ୍ର ମୁକ୍ତିମାର୍ଗ ! ସେଥିପାଇଁ ତ ରାଜପୁତ୍ର ଶାକ୍ୟସିଂହ ଆଜି ସର୍ବତ୍ୟାଗୀ, ସଂସାର-ଉଦାସୀ-ସନ୍ନ୍ୟାସୀ !"

ଅମ୍ବାପାଲୀ ପଚାରିଲା···"କିନ୍ତୁ କିଏ ସେ ଶାକ୍ୟସିଂହ ?"

ଜୀବକ କହିଲେ···"ଆଉ ଦିନେ କହିବି ତାଙ୍କ କଥା !"

× × ×

Digitized by srujanika@gmail.com

ଜୀବକଙ୍କର ସେବା ଓ ଚିକିତ୍ସାରେ ଅମ୍ବାପାଲ୍ଲୀ ଧୀରେ ଧୀରେ ଆରୋଗ୍ୟ ଲାଭ କରି ଆସୁଛି । ଦୃଷ୍ଟିଶକ୍ତି ସମ୍ପୂର୍ଣ୍ଣ ଫେରି ଆସି ନଥିଲେହେଁ, ଅମ୍ବାପାଲ୍ଲୀ ଦେଖି ପାରୁଛି ସବୁ, ଅବଶ୍ୟ ଝାପ୍‌ସା ଭାବରେ ।

ସେ ଦିନ......

ଜୀବକଙ୍କୁ ପ୍ରଥମ ଥର ପାଇଁ ଦେଖି ଅମ୍ବାପାଲ୍ଲୀର ମର୍ମସ୍ଥଳ କେଉଁ ଅଦୃଶ୍ୟ ବ୍ୟାଧର ଶରାଘାତରେ ଯେପରି ଛିନ୍ନ ଭିନ୍ନ ହୋଇଗଲା ! ଏଇ ଜୀବକ—ଭିକ୍ଷୁ ! ସେଦିନର ସେଇ ପରିତ୍ୟକ୍ତ ଶିଶୁ ଆଜି ଯଦି ବଞ୍ଚିଥିବ, ହୁଏ ତ ହୋଇଥିବ ଠିକ୍ ଏଇ ଜୀବକଙ୍କ ପରି ! ଠିକ୍ ସେଇ ଚେହେରା, ସେଇ ପ୍ରଶସ୍ତ କପାଳ, ସେଇ ଆଖି, ସେଇ ଖଣ୍ଡାଧାର ନାକ ! ନା, ନା, ଜୀବକ କାହିଁକି ହେବେ ପାପୀୟସୀ ଅମ୍ବାପାଲ୍ଲୀର ଜାରଜ ? ସେ ଦେବତା ! କିନ୍ତୁ ଏ କି ଅତୃପ୍ତି ! ଏ କି କ୍ଷୁଧା ! ଏ କି କାମନା ! ଜୀବକଙ୍କୁ କୋଳରେ ଚାପି ଧରିବା ପାଇଁ ଏ କି ବ୍ୟଗ୍ରତା ! ଅମ୍ବାପାଲ୍ଲୀର ଦୁଇ ଆଖିରୁ ଦୁଇ ଧାର ଲୁହ ଝରି ଆସିଲା ।

ଜୀବକ ପ୍ରଶ୍ନ କଲେ..."ତୁମେ କାନ୍ଦୁଛ ମା ?"

"ନା, ନା, ଏ ସମ୍ବୋଧନ କାହିଁକି ? ଡାକ ଅମ୍ବା, ଅମ୍ବାପାଲ୍ଲୀ, କିମ୍ବା ଆଉ ଯାହା ଇଚ୍ଛା ହୁଏ ଡାକ !" କିନ୍ତୁ ଅମ୍ବାପାଲ୍ଲୀର ଜୀବନରେ କଣ ଏ ସମ୍ଭାବନା ନଥିଲା ? ରୋଗଶଯ୍ୟା ପାର୍ଶ୍ୱରେ ତାର ସେବାରତ ପୁତ୍ର, ଆଖିରେ ଲୁହ ଦେଖିଥିଲେ ଠିକ୍ ଏମିତି ପଚାରିଥାନ୍ତା...'ତୁମେ କାନ୍ଦୁଛ ମା ?' ମାତ୍ର ଯଶ ପାଇଁ ସେ ତ ସର୍ବସ୍ୱ ତ୍ୟାଗ କରିଛି ! ସେ ତ ସବୁ ସମ୍ଭାବନା ବିସର୍ଜନ ଦେଇଛି ! ତା' ହେଲେ ଏ ଅଭିଶାପ କାହିଁକି ?

ଜୀବକ ପୁଣି ଥରେ ପ୍ରଶ୍ନ କଲେ..."ତୁମେ କାନ୍ଦୁଛ ମା ?"

Digitized by srujanika@gmail.com

ଅମ୍ବାପାଲ୍ଲୀ ଆଖିର ଲୁହ ବସ୍ତ୍ରାଞ୍ଚଳରେ ପୋଛି କହିଲା···"ନା, ଜୀବକ, ଆଖିରେ କି ଗୋଟାଏ ଯନ୍ତ୍ରଣା ହେଉଛି ।"

"ତୁମେ ବ୍ୟସ୍ତ ହୁଅନା । ଯନ୍ତ୍ରଣାଟା ଆପେ ଆପେ କମି ଆସିବ !"

"ହଁ ଜୀବକ, ତୁମେ ସେ ଦିନ କହିବ ବୋଲି କହିଥିଲ ଶାକ୍ୟସିଂହଙ୍କ କଥା । କୁହ ମୋତେ ।"

ଜୀବକ ଆରମ୍ଭ କଲେ କପିଳବାସ୍ତୁର ସନ୍ନ୍ୟାସୀ ଶାକ୍ୟସିଂହଙ୍କ କାହାଣୀ ।

## ସାତ

ଗୌତମ ବୁଦ୍ଧ ଆସିବେ ବୈଶାଳୀ ।

ବୈଶାଳୀର ପୁରେ ପୁରେ ରଟି ଯାଇଛି ବାର୍ତ୍ତା ।

ଲିଚ୍ଛବୀମାନେ ବୁଦ୍ଧଙ୍କୁ ଯଥାଯୋଗ୍ୟ ରୀତିରେ ଆମନ୍ତ୍ରଣ କରିବା ପାଇଁ ବିପୁଳ ଉଦ୍ୟମରେ ବ୍ୟସ୍ତ । ଗୌତମଙ୍କର ଦର୍ଶନ ପାଇଁ ବୈଶାଳୀର ନରନାରୀ ବ୍ୟଗ୍ର, ଉତ୍କଣ୍ଠିତ !

ଇତିମଧ୍ୟରେ ଅମ୍ବାପାଲ୍ଲୀ ସମ୍ପୂର୍ଣ୍ଣ ଆରୋଗ୍ୟ ଲାଭ କରିଛି । ରାହୁମୁକ୍ତ ଚନ୍ଦ୍ର ପରି ଅମ୍ବାପାଲ୍ଲୀ ଫେରି ପାଇଛି ପୁଣି ଅପହୃତ ଯୌବନ । ମାତ୍ର ମାନସ-ସ୍ୱଚ୍ଛ ସେ ଆଖି ଦୁଇଟି ଉପରେ ନଇଁ ଆସିଛି ଯେପରି କଳାମେଘର ଛାଇ ! କି ଏକ ଅବ୍ୟକ୍ତ ଦୁଃଖ କଳାକମଳର ସେ ଆଖି ଦୁଇଟିକୁ ମଳିନ କରି ଦେଇଛି !

ଜୀବକ କହିଲେ···"ଶୁଣିଚ ମା, ପ୍ରଭୁ ବୁଦ୍ଧ ଆସିବେ ବୈଶାଳୀ !"

Digitized by srujanika@gmail.com

ଅମ୍ବାପାଲୀ କହିଲା···"କିନ୍ତୁ ମୋର ଜାଣି କି ଲାଭ ଜୀବକ ? ମୁଁ ଯେ ଗଣିକା ! ଦେହ ଯାହାର ପଣ୍ୟ, ସେ କି କେବେ ବୁଦ୍ଧ ଦର୍ଶନର ଯୋଗ୍ୟ ହୋଇପାରେ ଜୀବକ ?"

ଜୀବକ ଅଳ୍ପ ହସି ଉତ୍ତର ଦେଲେ···"ମାତ ଗଣିକା କିଏ ନୁହେଁ ମା ? ଦେହ କେବଳ ତମର ପଣ୍ୟ, ମାତ ପ୍ରାଣ ନୁହେଁ। କିନ୍ତୁ ଉଭୟ ଦେହ ଓ ପ୍ରାଣ ଯେଉଁମାନେ ପଣ୍ୟ କରିଛନ୍ତି, ସେମାନେ ଯେ ତମଠାରୁ ଆହୁରି ନୀଚ, ଆହୁରି ହୀନ ମା ! ବୈଶାଳୀ ସଂଘର ଏଇ ଲିଚ୍ଛବୀମାନେ । ଗଣ ନାମରେ ପ୍ରାଣ ଏମାନଙ୍କର ପଣ୍ୟ ହୋଇନାହିଁ କି ? ସଂଘ ପାଇଁ ଏମାନେ ବିବେକ ବଳି ଦେଇ ନାହାନ୍ତି କି ?"

ଅମ୍ବାପାଲୀର ଆଖିଦୁଇଟିରେ ନାଚି ଉଠିଲା ଯେପରି ରୁଦ୍ର-ବେଶ ବୈଶାଖର ଅଗ୍ନିଶିଖା !

ଆଜି ମହାରାଜ ବିମ୍ବିସାର ଆସିବେ । ମଗଧର ବାର୍ତ୍ତାବହ ବାର୍ତ୍ତା ଆଣିଛି ।

ଆଜ ଆସିବେ ବୁଦ୍ଧ ।

ଅମ୍ବାପାଲୀର ପ୍ରାସାଦରେ କେତେ କୋଳାହଳ ! କେତେ କୁସୁମର ସଜ୍ଜା ! ଅମ୍ବାପାଲୀ କହିଲା···"ଆଜ ଅତିଥି ଆସିବେ ଶିଖିମା, ଚିର ଈପ୍‌ସିତ ଅତିଥି !"

ଫାଲ୍‌ଗୁନ ପୂର୍ଣ୍ଣିମାର ସନ୍ଧ୍ୟା । ଆମ୍ରମୁକୁଳର ଗନ୍ଧରେ ବୈଶାଳୀ ଉପକଣ୍ଠରେ ଅମ୍ବାପାଲୀର ଆମ୍ରୋଦ୍ୟାନ ସୁରଭିତ ହୋଇ ଉଠିଛି ! ଅମ୍ବାପାଲୀ ବହୁଦିନ ପରେ ଆଜ ପୁଣି ବିଶ୍ୱମୋହିନୀ ସଜ୍ଜାରେ ସଜାଉଛି ନିଜକୁ । ଚନ୍ଦ୍ରା ଅମ୍ବାପାଲୀର ଲକ୍ଷାରଞ୍ଜିତ ଚରଣରେ ପିନ୍ଧାଉଛି ସ୍ୱର୍ଣ୍ଣ ତାଳମ୍ବ ମଞ୍ଜୁସ୍ୱର ମଞ୍ଜୀର । ଶ୍ୟାମା କଟିରେ



Digitized by srujanika@gmail.com

ପିନ୍ଧାଉଛି ନବମଣିଚୂର୍ଣ୍ଣୀ ମେଖଳା । ଛନ୍ଦା ବାହୁରେ ପିନ୍ଧାଉଛି କେୟୁର । ଶିଖିମା ଧୂପର ଧୂଆଁରେ ସୁରଭିତ କରୁଚି କୁନ୍ତଳ । ଅମ୍ବାପାଲ୍ଲୀ ଦର୍ପଣ ହାତରେ ଧରି କପାଳରେ ପିନ୍ଧୁଚି କୁଙ୍କୁମର ଟିପ ।

ଚହଲ ପଡ଼ିଯାଇଛି, ଆଜ ଆସିବେ ବିମ୍ବିସାର । ଗିରିନଦୀ ପରି ଅମ୍ବାପାଲ୍ଲୀର ପ୍ରାଣ ନାଚିଉଠୁଚି, ଆଜ ଆସିବେ ବୁଦ୍ଧ, ତାର ଈପ୍‌ସିତ ଅତିଥି !

ଅମ୍ବାପାଲ୍ଲୀ ଉତ୍କଣ୍ଠିତ କଣ୍ଠରେ କହିଲା···"ଚନ୍ଦ୍ରା, ଶ୍ୟାମା, ଛନ୍ଦା, ଶିଖିମା ! ଆଉ ବିଳମ୍ବ କରନା ସଖୀ ! ଏଇ ଯେ ଉଇଁ ଆସିଲାଣି ପୂର୍ଣ୍ଣିମାର ଚନ୍ଦ୍ର ।"

ଶିଖିମା ଅମ୍ବାପାଲ୍ଲୀର ବେଣୀରେ ଖୋସୁଥିଲା ଅଶୋକ ।

ରାଜପଥରେ କୋଳାହଳ ଶୁଭୁଚି । ଅମ୍ବାପାଲ୍ଲୀ ଛୁଟିଯାଇ ବାତାୟନ ପଥରେ ଚାହିଁଲା କୋଳାହଳମୁଖର ରାଜପଥ ଆଡ଼େ ! କିଏ ଜଣେ ଆସି ସମ୍ବାଦ ଦେଲା, ମହାରାଜ ବିମ୍ବିସାର କେଳି-ମନ୍ଦିରରେ ଅପେକ୍ଷା କରିଛନ୍ତି ।

ଏଇ ବୁଦ୍ଧ ଆସୁଛନ୍ତି । ସେଇଥିପାଇଁ ବୈଶାଳୀର ନର-ନାରୀଙ୍କର ଏ ଉନ୍ମତ୍ତ କୋଳାହଳ । ଅମ୍ବାପାଲ୍ଲୀ ବାତାୟନ ପାଖରୁ ଧାଇଁ ଆସି କହିଲା···"ଏଇ ଅତିଥି ଆସିଲେ ଶିଖିମା ! ଆଉ ମୃଗମଦ, ଆଉ ଲୋଧ୍ରରେଣୁ, ପଡ଼ିଥାଉ କୁସୁମର ମାଳା ।"

ଅମ୍ବାପାଲ୍ଲୀ ଉନ୍ମାଦିନୀ ପରି ଛୁଟି ଚାଲିଗଲା । ଅସମାପ୍ତ ବେଣୀରୁ ଝରି ପଡ଼ୁଥାଏ ରାଶି ରାଶି ଅଶୋକ ।

କବରୀ ବାନ୍ଧା ବନ୍ଦ ହୋଇଗଲା । ମହାରାଜ ବିମ୍ବିସାର ବିସ୍ମୟରେ ଆଖି ମଳିଲେ । କିଛିବି ସୁନ୍ଦର ରାଜଶଯ୍ୟୋପକରଣ ମାନେ ହତବାକ୍ ହୋଇଗଲେ ।

Digitized by srujanika@gmail.com

ଅମ୍ୱାପଲ୍ଲୀର ନୃତ୍ୟ ମନ୍ଦରରେ ଆତିଥ୍ୟ ଗ୍ରହଣ କରିଛନ୍ତି ଗୌତମ ବୁଦ୍ଧ । ଅମ୍ୱାପଲ୍ଲୀ ବିଶ୍ୱମୋହିନୀ ବେଶରେ ଉନ୍ମାଦିନୀ ପରି ଛୁଟି ଆସି ଲୋଟି ପଡ଼ିଲା ଧ୍ୟାନ-ନମୀଳିତ-ଚକ୍ଷୁ ବୁଦ୍ଧଙ୍କ ପାଦତଳେ ।

ଏ ଯେପରି ପ୍ରବୃତ୍ତି ସହିତ ନିବୃତ୍ତିର, ମହାକାଳ ସହିତ ମୁହୂର୍ତ୍ତର, ଜୀବନ ସହିତ ନିର୍ବାଣର ମହାମିଳନ ।

ସମବେତ ଭିକ୍ଷୁମଣ୍ଡଳୀଙ୍କ କଣ୍ଠରେ ଫୁଟିଥିଲା···

ବୁଦ୍ଧଂ ଶରଣଂ ଗଚ୍ଛାମି
ଧର୍ମଂ ଶରଣଂ ଗଚ୍ଛାମି
ସଙ୍ଘଂ ଶରଣଂ ଗଚ୍ଛାମି ।

---

# ତୁଷାର-ଦାହ

ତୁଷାରବୃତ ଦାର୍ଜିଲିଂ ଶୈଳଚୂଡ଼ାରେ କ୍ଷଣିକ ରବିକରର ଉଲ୍ଲାସ, ତା' ପରେ ତୁହିନର ଝର ଝର ଧାର ।

ପ୍ରାର୍ଥନାରତ ସେଣ୍ଟ ଜର୍ଜ କନଭେଣ୍ଟ ସ୍କୁଲର ଶିଶୁମାନଙ୍କ କଣ୍ଠରେ ବିଶ୍ୱାସଭରା ସଙ୍ଗୀତ ।

ପ୍ରଭୁ, ଆମ୍ଭମାନଙ୍କୁ ପବିତ୍ର କର । ଆମର ସବୁ ପାପ କ୍ଷାଳନ କର । ଆମର ପିତାମାତାଙ୍କୁ ଆଶୀର୍ବାଦ କର । ଆମର ଭାଇ-ଭଉଣୀଙ୍କୁ କଲ୍ୟାଣ କର । ତୁମ ସୃଷ୍ଟିର ଆମେ କରୁଛୁ ଜୟଗାନ । ଆମର ଶ୍ରେଷ୍ଠ ଶ୍ରେଷ୍ଠ ହୃଦୟରେ ତୁମର ଅପାର କରୁଣା ପ୍ରାପ୍ତ ହେଉ । ଆମର ପ୍ରତିବେଶୀ ଭଲ ରହନ୍ତୁ । ଆମର ଦେଶ ସମୃଦ୍ଧ

Digitized by srujanika@gmail.com

ହେଉ । ସମସ୍ତେ ଶାନ୍ତି ଓ ସୁଖରେ ରହନ୍ତୁ । ପ୍ରଭୁ, ଆମକୁ ପ୍ରତିକ୍ଷଣରେ ସ୍ନେହ କର । ଆମେନ୍······

ଶତ ସହସ୍ର ଶିଶୁଙ୍କର ନମ୍ର ମଧୁର ନିବେଦନ ତୁଷାରରାଶି-ମଣ୍ଡିତ ଶୈଳର ପାଦଦେଶରୁ ଫେରି ଆସି ମିଶିଗଲା ବିଶ୍ୱପ୍ରକୃତିର ଉତ୍ସଙ୍ଗରେ ।

ପ୍ରାର୍ଥନା ପରିସମାପ୍ତ ପରେ ବୃଦ୍ଧ ପାଦ୍ରୀ ମିଷ୍ଟର ରବର୍ଟ ପିଆନୋ ଉପରେ ସ୍ଥିର ଦୃଷ୍ଟି ରଖି କହିଲେ—

ତୁମେମାନେ ଭାରତବର୍ଷର ବହୁ ରାଜ୍ୟରୁ ଆସି ଏଠାରେ ଜିସସ୍‌ଙ୍କ କରୁଣାରୁ ଏକତ୍ର ମିଳିତ ହୋଇଛ । ତୁମେମାନେ ପ୍ରଭୁଙ୍କର ସନ୍ତାନ । ତୁମ ହୃଦୟରେ ଜାତିଗତ, ସମ୍ପ୍ରଦାୟଗତ, ବର୍ଣ୍ଣଗତ କୌଣସି ବିଭେଦ ନାହିଁ, ରହି ପାରିବ ନାହିଁ ।

ଈଶ୍ୱରୋପାସନାରୁ ଯେଉଁ ଆନନ୍ଦ ମିଳେ, ତାହା ଆମ ଜୀବନର ସୁଖ-ଦୁଃଖକୁ ଗ୍ରହଣ କରିବାରେ ଆମକୁ ଶକ୍ତି ଦିଏ । ସେ ଶକ୍ତିର ତୁମେମାନେ ପୁଅ-ଝିଅ ନିର୍ବିଶେଷରେ ଅଧିକାରୀ ହୁଅ । ପ୍ରଭୁ ତୁମର କଲ୍ୟାଣ କରନ୍ତୁ ।

ମିଷ୍ଟର ରବର୍ଟଙ୍କ ଭାଷଣ ପରେ ମିସ୍ ଷ୍ଟୋକ କେତେ ଖେଳନା, ଟଫି, ବିସ୍କୁଟ ଓ କମଳା ଉପର ଡାମାପୁ ଧରି ପ୍ରବେଶ କଲେ । ସେବା ଓ ଶ୍ରୀର ଅଧିକାରିଣୀ ଏହି ମିସ୍ ଷ୍ଟୋକ କନ୍‌ଭେଣ୍ଟର ଏକ ସମ୍ପୂରଣୀ ଶକ୍ତି । ଦାର୍ଜିଲିଂର ପାର୍ବତ୍ୟ ଚୂଡ଼ାରେ ଆନନ୍ଦମୟ ପକ୍ଷୀ ଉଡ଼ିଗଲା ଭଳି ଏ ରମଣୀ ଏହି ଶିକ୍ଷାଶ୍ରମର ପ୍ରତ୍ୟେକଟି କୋମଳ ଶିଶୁ ଅନ୍ତରରେ ସ୍ନେହ କରୁଣାର ପକ୍ଷ ବିସ୍ତାର କରି ଜୀବନର ପ୍ରତି ମୁହୂର୍ତ୍ତରେ ଉଡ଼ି ବୁଲନ୍ତି ।

Digitized by srujanika@gmail.com

ପିଲମାନେ ଉତ୍ସବରେ ମାତିଗଲେ । ଆଜି ସେମାନଙ୍କର ମିଳିତ ଆନନ୍ଦ ଉତ୍ସବ । ନାନା ପ୍ରକାର ସାଜସଜ୍ଜାରେ କନ୍‌ଭେଣ୍ଟର ଶ୍ରୀ ମୁକୁଳିତ । ଗୃହଆଡ଼େ ବିଂଶତିହଜାର ଗ୍ରେଟ ଗ୍ରେଟ ବର୍ଷର ମୃଦୁ ସ୍ପନ୍ଦନ, କୋଳାହଳ ଓ ପୁଲକ ।

ପାଇନ ବଣର ଧାରେ ଧାରେ କଏ କେତେ ବିଦେଶୀ ପର୍ଯ୍ୟଟକ ଗୋଲ୍‌ଫ ଖେଳୁଛନ୍ତି । ବନ୍ୟ ଆରାମର ଉପଭୋଗରେ ବୁଡ଼ି ରହିଥିଲେ କେତେ ତରୁଣ ତରୁଣୀ । ଏଇଟା ଉତ୍ସବର ସିଜନ୍ । ଆନନ୍ଦ ଉଲ୍ଲାସ ଖୋଜିବାକୁ ଗୃହଆଡ଼ୁ ଆସିଛନ୍ତି କଏ କେତେ ପର୍ଯ୍ୟଟକ । ଦାର୍ଜିଲିଂ ଦେଉଛି ସେମାନଙ୍କୁ ଶାନ୍ତି ଓ ସୁଷମା ।

ହିମାଳୟର ଏହି ପାର୍ବତ୍ୟ ଚାରଣଭୂମି ଉପରେ ଯାହାଙ୍କର ପାଦ ଖେଳିଯାଏ, ସେମାନଙ୍କର ସ୍ମୃତିରେ ରହିଯାଏ ନିଃସର୍ଗ ମାଧୁରୀର ଦୋଳନ । ଏଠି ବ୍ୟସ୍ତ ବିରକ୍ତ ହୋଇ ରହିପାରେନା ମନୁଷ୍ୟ । ଶୈଳ, ଅରଣ୍ୟ, ତୁଷାର, ନୀଳ ନଭ—ସବୁର ପ୍ରଶାନ୍ତ ରୂପ ଏଠି ମଣିଷ ହୃଦୟରେ ଅକୂପାର ଆନନ୍ଦ ଓ ଐଶ୍ୱର୍ଯ୍ୟ ବିତରଣ କରୁଥାଏ ।

ଏକ ଶହ ଦୁଇ ନମ୍ବର କ୍ୱାଟରରେ ଗୋଟିଏ ଛୋଟଦୁଆରି କୋଠରୀରେ ମିଲିଟାରୀ ଷ୍ଟୋରର ହିସାବରକ୍ଷକ ଶ୍ରୀ ପଟ୍ଟନାୟକ ପୂର୍ବାହ୍ଣରେ କାଗଜପତ୍ର ଖେଳାଇ ହିସାବ ସମୀକ୍ଷା କରୁଥିଲେ । ଆକାଶରେ ମେଳା ମେଳା ବିମାନ । ପ୍ରତି ପନ୍ଦର ମିନିଟ୍‌ରେ ସେମାନଙ୍କର କର୍କଶ ଗୁଞ୍ଜନ ଶ୍ରୀ ପଟ୍ଟନାୟକଙ୍କୁ ଚକିତ କରି ଦେଉଥିଲେ ବି ଷ୍ଟୋର ଇନ୍‌ସପେକ୍‌ସନ ତାରିଖ ସ୍ଥିର ହୋଇ ଯାଇଥିବାରୁ ସେ ହିସାବ ମିଳାଇ କାଗଜପତ୍ର ଠିକ୍ କରୁଥିଲେ ।

Digitized by srujanika@gmail.com

ଟେଲିଫୋନ୍ ବାଜିଲା । ପଟ୍ଟନାୟକ ଯନ୍ତ୍ରଟିକୁ ଉଠାଇ କାନରେ ଦେଲେ । ମୁହଁରେ ହସ ଫୁଟିଲା ।

"ସତେ ଫଷ୍ଟ ହୋଇଛୁ ?"

"ହଁ ।"

…ମୋର ତ ବିଶ୍ୱାସ ନଥିଲା, ଯେଉଁ ଚଗଲା ସେ ! ମୁଁ ତ ଖୁବ୍ ବ୍ୟସ୍ତ, ତୁମେ ଅଭିରାମକୁ କହ ଗୋଟାଏ ଛୋଟ ଉତ୍ସବର ଆୟୋଜନ କର…ହାଲୋ…ହଁ…ସ୍କେଟିଂ ‥ମାନେ ବରଫ ଉପରେ ଉଙ୍ଗା ଭଳିଆ ଗୋଟିଏ ଯନ୍ତ୍ରରେ ଦଉଡ଼ିବା…ହାଲୋ… ହାଲୋ…

ଯନ୍ତ୍ରଟି ନୀରବ ହୋଇଗଲା । ଶ୍ରୀ ପଟ୍ଟନାୟକ ସେ ବିଷୟରେ ଆଉ ଧ୍ୟାନ ଦେଲେ ନାହିଁ । ଖୁବ୍ କାର୍ଯ୍ୟବ୍ୟସ୍ତ ଥିଲେ ସେ ସେତେବେଳେ ।

ସେଣ୍ଟ ଜର୍ଜ କନଭେଣ୍ଟର ଛାତ୍ରଛାତ୍ରୀଙ୍କର ଆଜି ସ୍କେଟିଂ ପ୍ରତିଯୋଗିତା । ବରଫ ଉପରେ ଛୋଟ ଛୋଟ ପାଦ ଖସିଯିବାର ଦୃଶ୍ୟ ଦେଖିବାକୁ ବାପା ମାଆ, ଆତ୍ମୀୟ ସ୍ୱଜନ, ବିଦେଶୀ ପର୍ଯ୍ୟଟକ ମେଳା ବାନ୍ଧିଛନ୍ତି ଦାର୍ଜିଲିଂର ଉପାନ୍ତ ଅଞ୍ଚଳରେ ।

ଗତ ରାତିରୁ ଘନ ତୁଷାରପାତ ହୋଇ ଯାଇଛି । ଆକାଶକୁ ଉଡ଼ିଯାଇଛି ନାନା ବର୍ଣ୍ଣର ବେଲୁନ୍ । ପଶମବସ୍ତ୍ରରେ ଆଚ୍ଛାଦିତ ଛୋଟ ଛୋଟ ପିଲାଙ୍କର ତୁଷାର ଉପରେ ଦେହ ଦୋଳନକୁ ଦେଖି ଦେଖି ସମାଗତ ଅତିଥିମାନେ ଆନନ୍ଦ ଉଲ୍ଲାସରେ ଚିତ୍କାର କରୁଛନ୍ତି ।

ଗୋଟାଏ ବଡ଼ ଶ୍ୱେତ ଚାଦର ଉପରେ, ଯେମିତି ମନେ ହେଉଛି, ଶୋଭା ପାଉଛି କେତେ ଫୁଲଦାନ ।

Digitized by srujanika@gmail.com

ଶ୍ରୀ ପଟ୍ଟନାୟକ ହାତ ବଢ଼ାଇ ଦେଖାଇ କହିଲେ—ଦେଖ ସୁରମା, ଲିଲିର ଗ୍ରୁନ୍‌ସ ଆସିଗଲା । ବୋର୍ଡ଼ ଉପରେ ଲେଖା ହୋଇ ଗଲାଣି ତାର ନାଁ । ଭୟ କରନ, ଗାଇଡ଼୍‌ ତା ପାଖେ ପାଖେ ଅଛି । ବରଫ ଉପରେ ପଡ଼ିଗଲେ ବ କିଛି ଆଘାତ ହେବନ । ଗ୍ରେଟ ପିଲା କଅଣ ବେଶୀ ଜୋରରେ ଯାଇ ପାରିବେ ? ଲିଲି କମିତ ସ୍କେଟିଂ କରିବ, ମଜା ଦେଖିବା ।

ପଟ୍ଟନାୟକଙ୍କର କନ୍ୟା ଲିଲି । ଗୋଟିଏ ଦଶବର୍ଷୀୟ ପୁଷ୍ପ । କାନ୍ତି ଓ କମନୀୟତାରେ ଏ ଝିଅଟି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରି ସାରିଛି ।

ଗାଇଡ଼୍‌ ଲିଲିର ହାତ ଧରି ନେଇଗଲେ । ତା ପାଦରେ ଖଞ୍ଜିଦେଲେ ସ୍କେଟିଂ ନୌକା । ବର୍ତ୍ତମାନ ଲିଲି ପ୍ରସ୍ତୁତ । ଏକ··· ଦୁଇ···ତିନି···ଯାଅ ।

ତୁଷାର ଉପରେ ଲିଲିର ପାଦ ଦୁଇଟି ଏପଟ ସେପଟ ବଙ୍କିମ ଗତିରେ ଯାଇ ଉଠିଗଲା ଗୋଟାଏ ବରଫ ସ୍ତୂପ ଉପରକୁ । ସେଠାରୁ ଖସି ଆସିଲା ଧୀରେ ଧୀରେ ସମତଳ ସ୍ଥାନକୁ । ଲିଲିର ସର୍ବାଙ୍ଗ ଆନ୍ଦୋଳିତ ହେଉଥାଏ । ଦେଖଣାହାରୀଙ୍କ କଣ୍ଠରୁ ଉଠୁଥାଏ ଆନନ୍ଦର ଚିତ୍କାର ।

ହଠାତ୍ ସୁରମା ପାଟି କଲେ—ଲିଲି ପଡ଼ିଗଲା, ପଡ଼ିଗଲା ! ତାକୁ ଧର । ସେ ଉଙ୍ଗାଟା···ଉଙ୍ଗାଟା···

ଦେଖୁ ଦେଖୁ ସୁରମା ଦେବୀ ତା ସ୍ୱାମୀଙ୍କ କୋଳ ଉପରେ ଢଳି ପଡ଼ିଲେ···ଚେତନାଲୁପ୍ତ ଦେହକୁ ମଟରକାରରେ ଆଣି ଯେତେବେଳେ ପଟ୍ଟନାୟକ ଓ କେତେକ ବନ୍ଧୁ ହାସ୍‌ପାତାଳରେ



Digitized by srujanika@gmail.com

ରଖନ୍ତି, ତେତେବେଳେ ସୁରଜିତ୍ ପଟ୍ଟନାୟକଙ୍କର ଅନ୍ତର ବ୍ୟଥାରେ ପୂର୍ଣ୍ଣ ହୋଇଗଲା ।

ଦେଖିଲେ ସୁରଜିତ୍, ଲିଲି କାନ୍ଦି କାନ୍ଦି କହୁଛି···ମାଆ, ତମେ ଆଖି ଖୋଲ । ମୋର କିଛି ହୋଇନି । ମୁଁ ଚଢ଼ି ଯାଇନି, ଦେଖ ତୁମ ପାଖରେ ବସିଛି । ତମେ ଆଖି ଖୋଲ ମାଆ !

ଅଭିରାମ ନୀରବ, କେବଳ ଅଶ୍ରୁ ଗଡ଼ିଚାଲିଛି ତା'ର ଦୁଇଟି ଆଖିରୁ । ଦାର୍ଜିଲିଂ ସେ ଇଚ୍ଛା କରି ଆସି ନାହିଁ, ସେ ଏ ପରିବାରକୁ ଛାଡ଼ି ରହିପାରିବ ନାହିଁ ବୋଲି ଆସିଛି ।

ହାସପାତାଳର ବାରନ୍ଦାରେ ଅଭିରାମ ବସି ବସି କେତେ କଥା ମନେ ପକାଉଛି । ଅନାବନା ଘାସ ସେଗୁଡ଼ାକ । ମାଆ ତା'ର ଆଖି ଫିଟାଇ ନାହାନ୍ତି । କଅଣ ବା ସେ ଆଖିଫିଟାରୁ ମିଳିବ ? ଅଭିରାମ ଦୀର୍ଘ ଶ୍ୱାସ ପକାଇଲା ।

ଦାର୍ଜିଲିଂର ସନ୍ଧ୍ୟା । ଏଠି କେହି ସନ୍ଧ୍ୟା ପ୍ରଦୀପ ବସାନ୍ତି ନାହିଁ । ଜଳଉଠେ ସହସ୍ର ଆଲୋକ । ଶୈଳଦେହକୁ ଆଉଜି ରହିଥିବା ବହୁ ଭୋଜନାଳୟରେ ନୃତ୍ୟଗୀତର ଆସର ଚାଲିଛି ।

ଅଭିରାମ ମିଲିଟାରୀ ଷ୍ଟୋରରେ ଅତି ନିମ୍ନବେତନଭୋଗୀ ଏକ କର୍ମଚାରୀ । ସୁରଜିତ୍ ତାକୁ ଏଠାରେ ରଖିଛନ୍ତି । ଏତିକି ଛଡ଼ା ତା'ର ପରିଚୟ କେହି ଜାଣନ୍ତି ନାହିଁ ।

ପ୍ରୌଢ଼ ସେ । ଓଡ଼ିଶାର ପଲ୍ଲୀ ଛାଡ଼ି ସେ ଏ ସହରରେ ଜୀବିକା ଧରି ରହିଛି । ପଚାରିଲେ କିଛି କହେ ନାହିଁ; ଜ୍ଞାତି, ବନ୍ଧୁ, ସ୍ତ୍ରୀ, ପିଲା କଥା ସେ ଜାଣେ ନାହିଁ । ନିରୁତ୍ତରର ମୂର୍ତ୍ତି ଏହି ଅଭିରାମକୁ ସୁରଜିତ୍ ଶ୍ରଦ୍ଧା କରନ୍ତି ।

Digitized by srujanika@gmail.com

ଆଜି କାଲି ତ ଦଣ୍ଡେ ଛାଡ଼େ ନାହିଁ ଅଭିରାମକୁ । କାଖରେ, କୋଳରେ ଧରି ସେ ବଢ଼ାଇ ଆଣିଛି କାଲିକୁ । ସେ ନେଇଯିବ କନ୍‌ଭେଣ୍ଟକୁ, ପୁଣି ଶେଷ ଘଣ୍ଟା ବାଜିଲେ କାଲିକୁ ଫେରାଇ ଆଣିବ ।

ଥରେ ଥରେ ଟିକିଏ ଦୂରରେ ଆଣ୍ଠୁମାଡ଼ି ବସିପଡ଼େ ଅଭିରାମ । ପିଲାଙ୍କ ପ୍ରାର୍ଥନା ଗୀତ ସହିତ ନିଜର କଣ୍ଠର ଅସ୍ପଷ୍ଟ ସ୍ୱର ତା'ର ମିଶିଯାଏ । 'ପ୍ରଭୁ, କଲ୍ୟାଣ କର' କହି କାଲିକୁ ସେ ଶହ ଶହ ପିଲାମାନଙ୍କ ଭିତରେ ଚାହିଁ ରହେ ।

ମିଲିଟାରୀ ଷ୍ଟୋରରେ କାମ କରି ଗୋଟାଏ ଅଧେ ଇଂରାଜୀ ଅଭିରାମ ଜାଣେ । ଅଧା ସାହେବୀ ଚାଲିଚଳଣି ବି ସେ ଆୟତ୍ତ କରିଛି । ସବୁବେଳେ ସେ ପୋଷାକରେ ଥାଏ । ଦାଢ଼ି ରଖିଛି । କାଲି ଡାକେ ରାମ୍ । ଅଭିରାମ ଦଉଡ଼ି ଯାଇ ଏହି ଶିଶୁର ସହସ୍ର ଫରମାସ ମଥାପୋତି ନେଇଯାଏ ।

ସୁସ୍ଥ ହୋଇଛନ୍ତି ସୁରମା । ପୁଣି କଳକୂଜନରେ ସେ ପରିବାର ଗୁଞ୍ଜିତ ହୋଇ ଉଠିଲା । ସୁରଜିତଙ୍କର ପଦୋନ୍ନତି ଘଟିଛି ଇତିମଧ୍ୟରେ । କାଲି ପ୍ରଥମ ସ୍ଥାନ ନେଇ କ୍ଲାସ ପରେ କ୍ଲାସ ଉଠି ଯାଇଛି । ସମସ୍ତଙ୍କ ସ୍ୱାସ୍ଥ୍ୟ ସୁନ୍ଦର । ଶୈଳ-ପ୍ରକୃତି ସେମାନଙ୍କ ପ୍ରାଣରେ ଦେଇଛି ଶାନ୍ତି ଓ ସୁଷମା ।

ମିସ୍ ଷ୍ଟୋକ ଆଜି ପ୍ରାର୍ଥନା ପରିଚାଳନା କରୁଛନ୍ତି । ତାଙ୍କର ଅନିନ୍ଦ୍ୟ କଣ୍ଠର ନିର୍ଝରଭଙ୍ଗୀ ସତେ ଯେପରି ସୃଷ୍ଟିର ପ୍ରଭୁଙ୍କୁ ଆବାହନ କରି ନେଇ ଆସୁଛି ଶାନ୍ତ ସୁବସ୍ଥିତ ଶିଶୁ ମେଳନ ଭିତରକୁ । ଶିଶୁ···ଶିଶୁ···ଶିଶୁ···ପରିଚ୍ଛନ୍ନ···ନିର୍ମଳ ଅନ୍ତର ଏଇ ପିଲାଙ୍କର । କାନ୍ଦ କାନ୍ଦ ପ୍ରାର୍ଥନା କରିବାକୁ ଏମାନେ ଶିଖିଛନ୍ତି ।

Digitized by srujanika@gmail.com

ହୃଦୟକୁ ସମର୍ପଣ କରି ଜିସସ୍‌ଙ୍କ ନିକଟରେ ପ୍ରାଣର ଆବେଗ ଖୋଲାଇ ଯାଉଛନ୍ତି ।

ଏହି ପ୍ରାର୍ଥନା ପରେ କନ୍‌ଭେଣ୍ଟର ବାର୍ଷିକ ଚିତ୍ରାଙ୍କନ ପ୍ରତିଯୋଗିତା ହେବ । ମାତ୍ର ଘଣ୍ଟାଏ କାଳ ଭିତରେ ଯେ ଯାହା ବିଷୟ ନେଇ ଚିତ୍ର ଅଙ୍କନ କରିବେ । ବାପା ମାଆଙ୍କ ଠାରୁ ଆରମ୍ଭ କରି ଗିରିବ ଭିକାରି, ଟ୍ରଫିକ୍ ପୋଲିସ, ଅବା ବାଘ, ସିଂହ, ପକ୍ଷୀ, ବୃକ୍ଷ ଯେ ଯେଉଁ ପ୍ରକାର ତାହାଙ୍କ ବିଷୟ ମନକୁ ଆଣିବ, ଅଙ୍କନରେ ବୁଝାଇବ ।

ଶିଶୁ-ଅଙ୍କନ-କଳା ଉପଭୋଗ କରିବା ପାଇଁ ନିମନ୍ତ୍ରିତ ଅତିଥିରେ ପୂର୍ଣ୍ଣ ହୋଇ ଯାଇଛି କନ୍‌ଭେଣ୍ଟର ସ୍ବାସ୍ଥ୍ୟପ୍ରଦ ପ୍ରାଙ୍ଗଣ ! ସଦାଶୟ ବ୍ୟକ୍ତିମାନେ ଆଣିଛନ୍ତି ସାଙ୍ଗରେ କେତେ ଖାଦ୍ୟଦ୍ରବ୍ୟ, କେତେ ପ୍ରକାର ପାନୀୟ । ଫାଦର୍ ଯୋଷେଫ୍, ମିଷ୍ଟର ରବର୍ଟ, ମିସ୍ ଷ୍ଟୋକ ପରମ ଆପ୍ୟାୟିତ ମାନସରେ ଅତିଥିମାନଙ୍କର ପରିଚର୍ଯ୍ୟା କରୁଛନ୍ତି ।

ବିଦେଶୀ କଳାରସିକ ଟୁ୍ୟରିଷ୍ଟ ବି ଦେଖା ଯାଉଛନ୍ତି । ହାତରେ କାମେରା ଧରି ସେମାନେ ନିରୀକ୍ଷଣ କରୁଛନ୍ତି, କାହାର ଶିଳାପୂଜନ ପାଇଁ ଭୁବନମୋହନ ଭଙ୍ଗୀକୁ । କିଏ ଲମ୍ବା ହୋଇ ଶୋଇଯାଇ ରଙ୍ଗ ବୋଳି ଚାଲିଛି ତଥାକଥିତ ମଦର ମୁହଁରେ, କିଏ ବା ଧ୍ୟାନସ୍ଥ ରହିଯାଇଛି କେତେ କାଳ କଅଣ ଅଙ୍କନ କରିବ ବୋଲି ।

ମାଇକରେ ଘୋଷଣା କରାଗଲା । ତିରିଶଟି ଚିତ୍ରାଙ୍କନ ବର୍ତ୍ତମାନ ପରିଶୋଭିତ ହେଉଛି ଗ୍ୟାଲେରୀରେ । ପ୍ରଥମ ହୋଇଥିବା ଚିତ୍ରାଙ୍କନ ତଳେ ବିଦ୍ୟୁତ୍ ଆଲୋକରେ କନ୍‌ଗ୍ରାଚ୍ୟୁଲେସନ୍ ଲେଖା

Digitized by srujanika@gmail.com

ଯାଇଛି । ଅଭିଥିମାନଙ୍କର ଉତ୍ସାହ, ପ୍ରେରଣା ଓ ଆଶୀର୍ବାଦରୁ ଓ ପ୍ରଭୁ ଜଗନ୍ନାଥଙ୍କର ଅପାର କରୁଣାରୁ ଏ ବର୍ଷର ଚିତ୍ରାଙ୍କନ ପ୍ରତି-ଯୋଗିତା ସଫଳ ହୋଇଛି । ଏଥି ସଙ୍ଗେ ସଙ୍ଗେ ଶିଶୁ ରୂପକାରଙ୍କୁ ବି ଧନ୍ୟବାଦ ଜଣେଇ ଦିଆଯାଇଛି ।

ଗ୍ୟାଲେରି ଲୋକାରଣ୍ୟ । ସୁରଜିତ୍, ସୁରମା ଓ ଅଭିରାମ ଗଲେ ସେଇ ଆଡ଼େ । ଲିଲି ଯେ କେଉଁଆଡ଼େ ମିଶିଗଲା, କେହି ଜାଣି ପାରିଲେ ନାହିଁ ।

ଜଳ ଜଳ ହୋଇ ଜଳୁଛି—କନ୍‌ଗ୍ରାଚ୍ୟୁଲେସନ ଶିଳ୍ପୀ ଲିଲି ପଟ୍ଟନାୟକ !

ସୁରଜିତ୍ ଅବାକ୍ ହୋଇଗଲେ । ସୁରମା "ମୋ ଲିଲି ଫଷ୍ଟ ହୋଇଛି" କହି କମିତି କଅଣ ହୋଇଗଲା । ଆଜି ଅଭିରାମ ନୀରବ ହୋଇ ରହିଗଲା ।

ପୂର୍ଣ୍ଣଗର୍ଭା ନଦୀ । ସେହି ନଦୀ ବାରି ଉପରେ ନାଉରି ଛୁଟି ଦେଇଛି ନୌକା । ନୌକାର ଆରୋହୀ କେ ଛିଡ଼ା ହୋଇଛନ୍ତି, କିଏ ବସିଛନ୍ତି । ଆକାଶରେ ଧୂମାଳ ମେଘପଟଳ । ନାଉରି କାଠ ମାରି ଡଙ୍ଗା ଭସାଇଛି । ଗୋଟାଏ ଗୋଟାଏ ପକ୍ଷୀ ଉଡ଼ି ଯାଉଛନ୍ତି ଆକାଶ ଚିରି—ବାସ୍, ଏଇ ହେଲା ଲିଲିର ବିଷୟବସ୍ତୁ । କିନ୍ତୁ କି ସୁନ୍ଦର ସେ କଳ୍ପନା, ରଙ୍ଗର କି ଚମତ୍କାର ଆଭରଣ !

ସୁରମା ଏକ ଦୃଷ୍ଟିରେ ଚାହିଁ ରହିଲେ ନିଜ ଝିଅର ଏଇ ଅଙ୍କନକୁ । ଧୀରେ ଧୀରେ ତାଙ୍କର ଆପାଦ ମସ୍ତକ ନିଶ୍ଚଳ ହୋଇ ଆସିଲା । ମଥା ଭିତରେ ଶତ ସହସ୍ର ଶବ୍ଦର କୁହାଟ । ରକ୍ତର ବେଗ କମି ଆସିଲା ଶିରା ପ୍ରଶିରାରେ । ଆଖି କ୍ରମେ ଲୋତକ ଢାଳିଲା । ସେ ଢଳି ପଡ଼ିଲେ, ସୁରଜିତଙ୍କର ବକ୍ଷ ଉପରକୁ......

Digitized by srujanika@gmail.com

ଅଚେତନ ସୁରମାକୁ ବନ୍ଧ ଆଣିଦେଲ ଆମ୍ବୁଲାନସ୍ ହାସପାତାଳକୁ···ସୁରମା ଶେଷ ଚେତନାରେ ଦେଖିଥିଲେ ଝିଅର ପ୍ରତିଯୋଗିତା ଅଙ୍କନ, ଯାହାକୁ ପ୍ରଥମ ସ୍ଥାନ ଦେଇଥିଲେ ବିଚାରକ-ମଣ୍ଡଳୀ ଏବଂ ସେହି ଚେତନା ହେଲ ଅନ୍ତିମ ଚେତନା; ତା'ପରେ ସେ ତନ୍ଦ୍ରାରୁ ଆଉ ଉଠିଲେ ନାହିଁ ।

ଦାର୍ଜିଲିଂର ପାଇନ୍ ବଣରେ ଯଥାରୀତି ସନ୍ଧ୍ୟା ନଇଁ ଆସିଲା ।

× × ×

ଶୋକର ସମାପ୍ତି ଅଛି, ନହେଲେ ମଣିଷ ଜୀଇଁପାଆନ୍ତା ଏ ଧରାପୃଷ୍ଠରୁ । ସୁରଜିତ୍ ସ୍ତ୍ରୀଙ୍କୁ ହରାଇ ସେ ଅପଘାତ ଶୋକରୁ ମୁକ୍ତି ପାଇବା ପାଇଁ ଖୋଜିଲେ ଜନ୍ମଭୂମିକୁ । ଫେରି ଆସିବେ ସେ ପୁଣି ମାତୃସ୍ତନ୍ୟ ନିକଟକୁ; ଜୀବର ବିଦେଶଯାତ୍ରାର ପ୍ରତିକୂଳ ସେ ହେବେ ବା କପରି ?

କାହିଁକି ସୁରମା ମରିଗଲେ ? ବ୍ୟାଧି ନାହିଁ, ଅପଘାତ ନାହିଁ, ଏକ ସୁସ୍ଥ ଜୀବ । ଝିଅର ଅଙ୍କନ ପରିପାଟୀ ଦେଖି ଦେଖି ଆଖି ବୁଜିଦେଲେ !

ଏ କଅଣ ଅତି ମାତ୍ରାରେ ଆନନ୍ଦ ଉପଲବ୍ଧି ? ଅବା ଆଉ କେଉଁ ଦୁରଧିଗମ୍ୟ ରହସ୍ୟ ଏଥିରେ ନିହିତ ଅଛି, କିଏ ଜାଣେ ?

ଗମ୍ଭୀର ରବିରେ ପାଦଚାରଣା କରୁଥିଲେ ସୁରଜିତ୍ ନିଜ କ୍ୱାଟର ସମ୍ମୁଖବର୍ତ୍ତୀ ନୀଳ ଦୂବା ଶେଯ ଉପରେ । ଚାରିଆଡ଼େ ନିସ୍ତବ୍ଧ ବନାନୀ, ହେମାଳ ପ୍ରକୃତି । ଯେଉଁ ଶ୍ମଶାନରେ ସେ ସେଦିନ ସୁରମାକୁ ଚିତାରେ ପ୍ରଜ୍ୱଳିତ କରି ଆସିଲେ, ସେ ଦିନର କଥା ସେ ଭୁଲି ନାହାନ୍ତି ।

ଗଳାଟି କାଶି କିଏ ଆସୁଥିବାର ଜାଣିଲେ ସୁରଜିତ୍ ।

Digitized by srujanika@gmail.com

କିଏ ?

ମୁଁ ଅଭିରାମ ।

କଅଣ କିଛି କହିବ ?

ଶୁଣିଲି, ଆପଣ ଓଡ଼ିଶାକୁ ଫେରିଯିବେ ଆଉ ଗୋଟାଏ ନୂଆ ଚାକିରି ନେଇ ?

ହଁ, ମୁଁ ହୀରାକୁଦ ବନ୍ଧ ବିଭାଗରେ କୌଣସି ଏକ ଚାକିରି ପାଇ ଯାଉଛି । ଆଉ ତୁମେ ବି ଯିବ, ମୁଁ ସେ ବ୍ୟବସ୍ଥା କରିଛି । ଲିଲିର ପଢ଼ାପଢ଼ି କଥା ଭାବୁଛି । ତାକୁ ବିଲାତ ପଠାଇ ଦେବି । ଦାର୍ଜିଲିଂର ମିଶନ୍ ସେ ଭାର ନେବେ ବୋଲି କଥା ଦେଇଛନ୍ତି ।

ଅଭିରାମ ସେଇଠି ତଳେ ବସି ପଡ଼ିଲା, କହିଲା—ଆପଣ ଟିକିଏ ବସନ୍ତୁ, ମୋର କେତୋଟି କଥା କହିବାର ଅଛି ।

ସୁରଜିତ୍ ବସି ପଡ଼ିଲେ—

ଅଭିରାମ କହିଲା—ଆପଣ ଓଡ଼ିଶା ଫେରନ୍ତୁ ନାହିଁ, ପୁଣି ସେ ହୀରାକୁଦ ବନ୍ଧ ଆଡ଼େ । ତାହା ହେଲେ ମାଆ ସନ୍ତୁଷ୍ଟ ହେବେ ନାହିଁ ।

"ମାଆ ସନ୍ତୁଷ୍ଟ ହେବେ ନାହିଁ ? କଅଣ କହୁଛୁ ଅଭିରାମ ?"

"ସତ କହୁଛି ବାବୁ, ମାଆ ଜୀଇଁଥିଲେ ଏ କଥା ସେ କରେଇ ଦେଇ ନଥାନ୍ତେ ।"

ସୁରଜିତ୍ ଅବାକ୍ ହେଲେ । କହିଲେ—ଅଭିରାମ, ତୁମେ ଯାହା ଜାଣ ସବୁ କହିଯାଅ । ମାଆ ସେ ଏପରି ଚାଲିଗଲେ, ରୋଗ ବୈରାଗ୍ୟ କିଛି ନାହିଁ, ହଠାତ୍ ହାର୍ଟ ଫେଲ୍ କଲା । ତୁମେ କିଛି ଜାଣିଛ କାହିଁକି ଏମିତି ହେଲା ?

Digitized by srujanika@gmail.com

ଜାଣିଛୁ, ବାବୁ···

ହସ୍ତ, ବସି ରହ ଅଭିଗ୍ରମ ପାଟିକଲେ—ଅଭିଗ୍ରମ, ତମେ ଜାଣିଛ ! ମତେ ଏ ଯାଏ କିଛି କହି ନାହଁ ! କଅଣ ଜାଣିଛ ?

× × ×

ଊଣେଇଶ ଚଉଷଠି ମସିହା ଫେବ୍ରୁଆରି ମାସ, ଦିନ ଠିକ୍ ମନେ ନାହିଁ ବାବୁ ! ମାଆଙ୍କର ଭଉଣୀ, ଭାଇ ଛୋଟ ଛୋଟ ହୋଇଥାନ୍ତି; ପୁଣି ମାଆଙ୍କର ବୋଉ, ବାପା, ସାଙ୍ଗସାଥି ପ୍ରାୟ ଦଶ ବାର ଜଣ ହେବ ବଣଭୋଜି କରିବାକୁ ଗଲେ । ଖୁସି ମନରେ କେତେ ଗୀତ ଗାଇଲେ, ଆନନ୍ଦ କଲେ । ବଣଭୋଜି ପରେ ଘରକୁ ଫେରିବା କଥା ! ପୁଣି କାହାଁକି ମନେ କଲେ, ହୀରାକୁଦ ବନ୍ଧ ପାଣି ଉପରେ ଆଜ ଥରେ ଡଙ୍ଗାରେ ବୁଲି ଆସିବେ । ଛୋଟ ଡଙ୍ଗା, ଲୋକ ଦଶ ବାର ଜଣ ହେବେ । ସମସ୍ତେ ତ ଖୁସି ମନରେ ଥାନ୍ତି । ନାଉରି ବି କିଛି ଭାବିଲା ନାହିଁ, ନାହା ଛାଡ଼ିଦେଲା । ଆଗି ରସରଙ୍ଗରେ ଉଜ୍ଜ୍ୱଳ ଉଠୁଚି । କାହାର ଗଣ୍ଡରେ ନାଲିଆ ରଙ୍ଗରୁ ମେଞ୍ଚାଏ, କାହାର ଫ୍ରକ୍ ଏତିକିବେଳକୁ ସପ୍ତବର୍ଣ୍ଣରେ ଶିହରୁପ ସୃଷ୍ଟି କରୁଛି, କିଏ ଆମ୍ବଟାଏ ଅଙ୍କନ କରୁ କରୁ କଦଳୀ ରୂପ ହେଲାଣି, କିଏ ପକ୍ଷୀ ଗୋଡ଼ରେ ମଣିଷ ପାଦ ଥୋଇଲାଣି । କାହାର ବାପା ଅସୁର ରୂପ, କାହାର ମାଆହାତରେ ମାର୍କେଟିଂ ଥଳି । ଶ୍ରେଣୀ ଶ୍ରେଣୀ ଅଧା ବସା ଶୁଆରେ ପୁଅଝିଅ ସୃଷ୍ଟିନିସ୍ପାରେ ବ୍ୟଥାତୁର ।

ଦେଖଣାହାରିଏ କେଉଁ ଅଳସ ହାଇ ମାରୁଥିବା ଶିଶୁ ପାଖକୁ ଯାଇ ଟେଫି ଦେଇ ଆସୁଛନ୍ତି; କିଏ ବା ପିଠିରେ ହାତ ମାରି··· ସାବାସ୍···ହୋଇଛି କହି ଆନନ୍ଦ ବିତରଣ କରୁଛନ୍ତି ।

Digitized by srujanika@gmail.com

ପ୍ରକୃତି ଦେବୀ ଏଠି ସୁରମ୍ୟ ଉପବନ ସାଜନ୍ତି । ଶତ ଶତ ବର୍ଣ୍ଣିଳ ପ୍ରଜାପତି ଏଠାରେ ସଞ୍ଚରଣ କରୁଛନ୍ତି ।

କନ୍‌ଭେଣ୍ଟର ଏଇ ହେଲା ବାର୍ଷିକ ଆମୋଦଭରା ଅଙ୍କନ ଉତ୍ସବ ।

ସୁରଜଙ୍କ ସୁରମା ବସିଛନ୍ତି ଲିଲି ଆଡ଼େ ଚାହିଁ । ଲିଲି ଭଲ ଆଙ୍କେ । ମାତ୍ର ଏତେ ପିଲାଙ୍କ ଭିତରେ ପ୍ରଥମ ହେବା କଷ୍ଟକର । ହେଲେ ମାଗଣାରେ ବିଲାତ ଭ୍ରମଣ, କେବଳ ଲିଲି ନୁହେଁ, ବାପା ମାଆ ବି । ଗୋଟିଏ ଉଡ଼ାଜାହାଜ କମ୍ପାନୀ ଏଇ ମର୍ମରେ ଘୋଷଣା କରିଛି । ସେଥିପାଇଁ ଏ ଅନୁଷ୍ଠାନ ।

ଲିଲିର ଅଙ୍କନ ଚାଲିଛି । କଅଣ ସେ ଚିତ୍ରାୟିତ କରୁଛି ଦେଖାଯାଉନି । ଶ୍ରେଷ୍ଠ ହୃଦୟରେ ବିଶ୍ୱମହିମା କଅଣ ବା ପ୍ରତିଫଳିତ ହେବ ?

ସୁରମା ବସିଛନ୍ତି ହାତରେ ଫ୍ଲାସ୍କ ଦୁଧ ଧରି—ଝିଅ ଶ୍ରାନ୍ତ କ୍ଲାନ୍ତ ହୋଇ ଯାଇଥିବ, ଅଙ୍କନ ସରିବା ମାତ୍ରେ ସେ ପିଆଇ ଦେବେ ଲିଲିକୁ ।

ଅଭିରାମ ରହିଛି ରହିବା ସ୍ଥାନରେ । ତା' ମନରେ ନିର୍ଦ୍ଦିଷ୍ଟ କିଛି ଭାବନା ନାହିଁ । ପ୍ରାର୍ଥନା ସଙ୍ଗୀତର ସେହି ଯେ "ପ୍ରଭୁ, କଲ୍ୟାଣ କର" ଆବେଦନ, ତାହାହିଁ ତାହାର ମନକୁ ଆପ୍ଲୁତ କରୁଛି ।

ବିଚାରକମାନେ ପ୍ରତିଟି ଶିଶୁଶିଳ୍ପୀ ପାଖକୁ ଯାଇ ଚିତ୍ର ନିରୀକ୍ଷଣ କରୁଛନ୍ତି । ହସି ହସି କଅଣ ଲେଖୁଛନ୍ତି ସେମାନଙ୍କ କାଗଜ ଉପରେ ।

ଆଉ ପାଞ୍ଚ ମିନଟ ସମୟ ବାକି ଅଛି । ତା'ପରେ ଅଙ୍କନ ପ୍ରତିଯୋଗିତା ଶେଷ ହେବ । ତାହା ପରେ ପୁରେ ଆର୍ଟ



Digitized by srujanika@gmail.com

ଗ୍ୟାଲେରୀରେ ପୁରସ୍କୃତ ହୋଇଥିବା ଉତ୍ତରଣଟି ଚିତ୍ରାଙ୍କନ ପରିଶୋଭିତ ହେବ ଦର୍ଶକମାନଙ୍କର ମନୋରଞ୍ଜନ ପାଇଁ ।

ଲିଲି ହସି ହସି ଦଉଡ଼ି ଆସି କହିଲା—ମାଆ, ମୁଁ ଭଲ ଚିତ୍ର କରିଛି ।

ସୁରମା ଆନନ୍ଦରେ କହିଲେ—ହଉ, ଆଗ ଦୁଧତକ ପିଇ ଦେବୁ ତ !

ସୁରଜିତ୍ ଲିଲିର ମଥା ସ୍ପର୍ଶ କରି କହିଲେ—ଫାଷ୍ଟ୍ ହେବୁ ?

—ହେବି ।

× × ×

କୂଳ ଅଳପ ବାଟ ଥିଲା । ଆଉ କେତେ ହାତ ଗଲେ ସବୁ ଭଲରେ ଭଲରେ ଘଟିଥାନ୍ତା । ପବନ ବି ଜୋର ନଥିଲା । ସୂରଜ ଦେବତା ଢଳି ଆସୁଥିଲେ ।

କେଜାଣି କଅଣ ହେଲା ଡଙ୍ଗା ଟଳମଳ ଖାଇଲା । ସମସ୍ତେ ପାଟି କରି ଉଠିଲେ । ଡଙ୍ଗା ଓଲଟି ପଡ଼ିଲା । ଯେତେକ ଡଙ୍ଗାରେ ବସିଥିଲେ ଡଙ୍ଗାତଳେ ରହିଗଲେ ।

ନାଉରି ଚେଷ୍ଟା କଲା, କିନ୍ତୁ ପାରିଲା ନାହିଁ । ଯାହାକୁ ସେ ଧରିଲା, ପ୍ରାଣ ବିକଳରେ ସେ ନାଉରିକୁ ଧରିଲା । ନାଉରି ଜଣଜଣଙ୍କର ମୁଠା ଛୁଡ଼େଇଦେଲା ନିଜକୁ ବଞ୍ଚାଇବା ପାଇଁ ।

ସେମାନେ ବୁଡ଼ିଗଲେ । ବାବୁ, ମା, ପୁଅ, ଝିଅ, ସାଙ୍ଗ ସାଥି ସମସ୍ତେ । କେବଳ ବାବୁଙ୍କର ଦଶ ବର୍ଷର ଝିଅକୁ ନାଉରି ଚୋଡ଼ାଟାଏ ମାରି ଦେବାରୁ ସେ ଗଣ୍ଡ ସୁଅରୁ ଖସି ଆସି କୂଳକୁ ଆସିଲା । ସେ କୁଳ ଟିକିଏ ପହଁରି ଜାଣିଥିଲେ । ସେଇ ଯେ ଝିଅ

Digitized by srujanika@gmail.com

ଜୀବନ ପାଇଲେ, ଆଜି ସବୁ ଭାସିଗଲେ, ସେଇ ହେଉଛନ୍ତି ମୋ ମାଆ । ସେ ବଂଶରେ ଆଜି କେହି ରହିଲେ ନାହିଁ ।

ତାଙ୍କ ସମ୍ବନ୍ଧ ଆପଣଙ୍କର ବିବାହ ହେଲା । ମାତ୍ର ବିବାହ ପୂର୍ବରୁ ତାଙ୍କର ଏମିତି ମୂର୍ଚ୍ଛା ହୋଇ ଯାଉଥାଏ । ଆପଣଙ୍କୁ ନ ଜଣାଇ ବିବାହ ଦିଆଗଲା ।

ପାଣି ବା ଡଙ୍ଗା ଦେଖିଲେ ମାଆ ମୋର ମୂର୍ଚ୍ଛା ହୋଇ ଯାଉଥିଲେ । ଔଷଧପତ୍ର କିଛି କାମ କଲାନାହିଁ । ଏତକ କହି ଅଭିରାମ ଆଖି ପୋଛି ଆଣିଲା । ନିର୍ବାକ୍ ସୁରଜିତ୍ ଶୂନ୍ୟ ପ୍ରଶାନ୍ତ ଆକାଶକୁ ଚାହିଁ ରହିଲେ । ସୁରଜିତ୍ ଏବେ ଭାବିଲେ ସୁରମା କାହିଁକି ଜଳର ସ୍କେଟିଂ ଦେଖି ଏପରି ମୂର୍ଚ୍ଛା ହୋଇ ଯାଇଥିଲେ । ସ୍କେଟିଂ ଯନ୍ତ୍ର ନୌକା ଭଳି । ପୁଣି ଜଳର ନଈ ଉପରେ ନୌକା ଚିତ୍ର ଦେଖି ସୁରମା ଶେଷ ବିଦାୟ ନେଇଗଲେ ।

ସୁରଜିତ୍ ପଚାରିଲେ—ଅଭିରାମ, ତୁମେ ଏସବୁ କିମିତି ଜାଣିଲ ?

ଅଭିରାମ ବାଷ୍ପରୁଦ୍ଧ କଣ୍ଠରେ କହିଲା—ମୁଁ ସେଇ ନାଉରି, ସେଠି କାହାକୁ ରକ୍ଷା କରିପାରିଲି ନାହିଁ କେବଳ ମାଆଙ୍କ ଛଡ଼ା । ଆଜି ମାଆଙ୍କୁ ବି ହରାଇଲି । ବଡ଼ କଷ୍ଟ ପାଇଲଣି । ବାବୁ, ମୋ ନିଜ ପରିବାର ଛାଡ଼ି, ତାଙ୍କ କଥା ନ ଭାବି ଆପଣଙ୍କ ଆଶ୍ରୟକୁ ଆସିଲି, କେବଳ ମାଆଙ୍କୁ ଆଖିଛଡ଼ା କରି ପାରିବି ନାହିଁ ବୋଲି । ସେ ବି ଚାଲିଗଲେ । ମୁଁ ଜାଣିଥିଲି କେଉଁଥି ପାଇଁ ସେ ମଲେ । ଡଙ୍ଗା ଦେଖିବାକ୍ଷଣି ତାଙ୍କର ଦେହ କଅଣ ହୋଇଯାଏ । ସେ ସେଇଥିରେ ଚାଲିଗଲେ ।



Digitized by srujanika@gmail.com

ଆଜ ମୁଁ ରହିବ ନାହିଁ ଏଠି ବାବୁ, ମୋର ପୂର୍ବ ବ୍ୟବସାୟକୁ ମୁଁ ଚାଲିଯିବ । ଖାଲି ଲିଲି କଥା ମନେ ପଡ଼ିବ । ଆପଣ ମଝେ ଖଣ୍ଡିଏ ଚିଠି ଦେଉଥିବେ । ପୁଣି ମୁଁ ହୀରାକୁଦ ପାଣି ଉପରେ ଡଙ୍ଗା ଚଳାଇବ, ସେଇଠି ମୋ ମାଆଙ୍କୁ ଦେଖିବ, ସେ ହୁଏତ ହୀରାକୁଦ ବନ୍ଧ ଉପରେ ଛିଡ଼ା ହୋଇ ମଝେ ମନା କରିବେ "ଡଙ୍ଗା ଚଳାନ, ଅଭିରାମ !", ମୁଁ ମାନିବ ନାହିଁ । କାଲି ସକାଳୁ ମୁଁ ଚାଲିଯିବ ବାବୁ !

କେତେ ଦିନ ପରେ ଗୋଟିଏ ସୁନ୍ଦର ନୂଆ ନାଆ ହୀରାକୁଦ ବନ୍ଧ ପାଣି ଉପରେ ଭାସିବା ଆରମ୍ଭ କଲା । ତା'ର ଗୋଟାଏ ମଙ୍ଗରେ ଲାଲ ସିନ୍ଦୂରରେ ଲେଖା ହୋଇଥାଏ, 'ମାଆ ସୁରମା', ଅନ୍ୟ ପାଖରେ ଥାଏ 'ଲିଲି' ।

ନାଉରି ଠେକା ବାନ୍ଧ କାତ ଧରି ଛିଡ଼ା ହୋଇଥାଏ ଦିଗନ୍ତକୁ ଅନେଇ । ବନ୍ଧ ପାଣିରେ ତା'ର ଛାଇକୁ ସେ ଦେଖେ । ପୁଣି ଅନାଏ 'ମା ସୁରମା'କୁ ଆଉ 'ଲିଲି'କୁ···ସତେ ଯେମିତି ସେମାନେ ଜୀବନ୍ତ ସେଠି ମଙ୍ଗ ଉପରେ ବସି ରହିଛନ୍ତି । ଅଭିରାମ ଆଖି ପୋଛେ, ପୁଣି ସେ ଆଖି ଉପରେ ପାପୁଲି ରଖି ଦି'ଟା ଚଳମାନ ପକ୍ଷୀକୁ ଦେଖିନଏ ।



Digitized by srujanika@gmail.com

# ମୋଟା ଗାଡ଼ିଶ

ଅଚନୁ ବାବୁ ବଡ଼ଲୋକ । ହଁ ବଡ଼ଲୋକ ନୁହେଁ ତ କଣ ? ଆମ ଦେଶରେ କେତେ ଜଣଙ୍କର ମୋଟର ଗାଡ଼ି ଅଛି । ଅଚନୁ ବାବୁଙ୍କର ମୋଟର ଗାଡ଼ି ଅଛି । ସେମିତି ଗ୍ରେଟିଆ ମୋଟିଆ ଗାଡ଼ି ବି ନୁହେଁ । ଏକବାରେ ଚେଭେରଲେଟ୍ କାର୍ ଯାହାର ନୂଆ ଦାମ୍ ଆଜକାଲି କୋଡ଼ିଏ ପଚିଶ ହଜାର ଟଙ୍କାରୁ କମ୍ ନୁହେଁ । ଅଚନୁ ବାବୁ ଯେତେବେଳେ ତାଙ୍କ ମୋଟର ଗାଡ଼ିରେ ବସି କଟକ ସହରର ସେଇ ଅଣଓସାରିଆ ଗଳି ରାସ୍ତା ଉପରେ ଦି ଗୃରି ଥର ଧାଁ-ଦଉଡ଼ କରିଯାନ୍ତି ସେତେବେଳେ ସାଙ୍ଗ ଲୋକଙ୍କ ମନରେ ମଧ୍ୟ କେତେ ପ୍ରକାର କଳ୍ପନା ଖେଳିଉଠେ । କିନ୍ତୁ ସେଇ ଗାଡ଼ିଟା ପାଇଁ ଯେ ଅଚନୁ ବାବୁ କେତେ ହନ୍ତସନ୍ତ ହେଉଛନ୍ତି, କେତେ ସର୍ବସ୍ୱାନ୍ତ ହେଉଛନ୍ତି ସେ କଥା କେହି ବୁଝେ ନାହିଁ । ବଡ଼ ଗାଡ଼ିର ବଡ଼ ପେଟ । ଯେତିକି ପେଟ୍ରୋଲରେ ଗ୍ରେଟିଆ ଗାଡ଼ିଟିଏ ପେତିକି ବାଟ ତିନିଥର ଯାଇ ବୁଲି ଆସିପାରିବ ସେତିକି ବାଟ ଯିବାପାଇଁ ବଡ଼ ଗାଡ଼ିକୁ ଲାଗେ ତା'ର ତିନିଗୁଣା ପେଟ୍ରୋଲ । ଖାଲି ସେତିକି ନୁହେଁ—ଅଚନୁ ବାବୁ ଗାଡ଼ିଟା କିଣିଥିଲେ କେଉଁ-କାଳୁ ଗୃକିରି ଜୀବନର ସୁବିଧାଲାଗି । ଦିନକୁ ଦିନ ଅଚନୁ ବାବୁ ଯେମିତି ବୁଢ଼ା ହୋଇ ଯାଉଛନ୍ତି, ତାଙ୍କ ଗାଡ଼ିଟା ମଧ୍ୟ ସେଇମିତି ବୁଢ଼ା ହୋଇଯାଉଛି । ସେ' ଦିନକୁ ନଅ ରୋଗ ବାଢ଼ାଉଛି ଓ ପୁଣି ସେ ରୋଗର ଚିକିତ୍ସା ପାଇଁ ଖର୍ଚ୍ଚର ପରିମାଣ ବଢ଼ି ବଢ଼ି ଯାଉଛି । କିନ୍ତୁ, ତଥାପି ଅଚନୁ ବାବୁ ଗାଡ଼ିଟାର ମାୟା ଛାଡ଼ି ପାରୁ ନାହାନ୍ତି, କାରଣ ଏଇ ଗାଡ଼ିଟା ତାଙ୍କୁ କେତେ ଅସମୟରେ କେତେ ସାହାଯ୍ୟ ନ କରିଛି !

Digitized by srujanika@gmail.com

କାର୍ଯ୍ୟ ଉପଲକ୍ଷେ ଅତନୁ ବାବୁ ଥାନ୍ତି ବିଦେଶରେ । ଦେହଟା ତାଙ୍କର ବିଦେଶରେ ଥାଏ ସିନା କିନ୍ତୁ ମନଟି ବରାବର ଲାଗି ରହିଥାଏ ତାଙ୍କର ସେହି କଟକ ସହରର ଗଳିଟି ଭିତରେ, ଯେଉଁଠି ଥାଆନ୍ତି ତାଙ୍କର ଆଦରର ପିଲାପିଲା ପରିବାର ସମସ୍ତେ । ଅକାଳେ ସକାଳେ ପିଲାପିଲାଙ୍କ ଦେହପା ସମ୍ବାଦ ପାଇଲେ ଅତନୁ ବାବୁ ଘଣ୍ଟାକ ଭିତରେ ଆସି ପହଞ୍ଚି ଯାଆନ୍ତି ତାଙ୍କର ସେଇ କ୍ଷୁଦ୍ର ବସାଟିରେ । କାହା ଯୋଗୁଁ ଏହା ସମ୍ଭବ ହୁଏ ? ଏଇ ତାଙ୍କର ଗାଡ଼ିଟି ନୁହେଁ ? ଖାଲି ସେତିକି ନୁହେଁ, ମୁଣ୍ଡଫଟା ଖରାରେ ଯେତେବେଳେ ଆଖି କାନ ଝାଇଁ ମାରି ଯାଉଥାଏ ସେତେବେଳେ ଅତନୁ ବାବୁ ଗସ୍ତ କଲାବେଳେ ବେଶ୍ ଆରାମରେ ଏଇ ଗାଡ଼ିଟି ଭିତରେ ଢୁଲାଇ ପଡ଼ଯାନ୍ତି । କେତେ ଶୀତ କାକରରେ ଯେତେବେଳେ ଦେହ କୋଲ୍ପି ମାରି ଯାଉଥାଏ ସେତେବେଳେ ବି ଅତନୁ ବାବୁ ଏଇ ଗାଡ଼ିଟି ଭିତରେ କାଚ ଟେକି ଦେଇ କେଡ଼େ ଆରାମରେ ଗସ୍ତ କରିଛନ୍ତି । ଝୁ-ଝୁ ବର୍ଷା ଛାଡୁ-ଥାଏ, ତାରି ଭିତରେ ଗାଡ଼ିଟି ଧାଇଁଥାଏ ଅବିରାମ ଗତିରେ, ଅତନୁ ବାବୁଙ୍କୁ ବେଶ୍ ଆରାମରେ ଆପଣା କୋଳ ଭିତରେ ବସାଇ । କୋରାପୁଟର ଘାଟି ରାସ୍ତା ଉପରେ ମଧ୍ୟ ବିନା କ୍ଳେଶରେ ଏଇ ଗାଡ଼ିଟା ଅତନୁ ବାବୁଙ୍କୁ ନେଇ ଯାଇଛି । ସେଥିପାଇଁ ଏଇ ଗାଡ଼ିଟି ଉପରେ ଅତନୁ ବାବୁଙ୍କର ବଡ଼ ମମତା ଲାଗିଯାଇଛି । ସେଥିପାଇଁ ଯେତେ ପଇସା ଖର୍ଚ୍ଚ ହେଲେ ସୁଦ୍ଧା ଅତନୁ ବାବୁ ଗାଡ଼ିଟି ଛାଡ଼ି ପାରି ନାହାନ୍ତି, ଯଦିଓ ସେଥିପାଇଁ ସେ ହବସ୍ୱାନ୍ତ ହୋଇ ପଡ଼ିଛନ୍ତି । କିନ୍ତୁ ଏକଥା କଅଣ ଜନତା ବୁଝେ ? ଜନତା ଆଖିରେ ସେ ବଡ଼ଲୋକ । ହଁ ବଡ଼ଲୋକ ନୁହେଁ ତ କ'ଣ ? ଅତନୁ ବାବୁଙ୍କର ଗୋଲଗାଲ ଚେହେରାଟି ଦେଖିଲେ କିଏ କହିବ ସେ ବଡ଼ଲୋକ

Digitized by srujanika@gmail.com

ନୁହନ୍ତି ? ବହୁବର୍ଷ ତଳର କଥା, ଏବେ ବି ଅତନୁ ବାବୁଙ୍କର ମନେ ପଡ଼ିଲେ ଅଜାଣତରେ ତାଙ୍କ ମୁହଁରୁ ମୃଦୁହାସ ଉକୁଟି ଉଠେ । ସେତେବେଳେ ତାଙ୍କର ବୟସ ଥିଲା ଅଳ୍ପ । ତାଙ୍କର ଫୁଲିଲା ଫୁଲିଲା ଗାଲ ଉପରେ ରଜାପିଲାଙ୍କ ପରି ସେ ତାଙ୍କ କଳାଟିକୁ ବଢ଼ାଇଦେଇ ଗାଲମୁଣ୍ଡି ରଖିଥିଲେ । ଥରେ ଜଣେ ପ୍ରସିଦ୍ଧ ଲୋକ ତାଙ୍କୁ ରେଲ ଷ୍ଟେସନରେ ଦେଖି କୌଣସି ଗଡ଼ଜାତ ରଜାପୁଅ ବୋଲି ଭୁଲରେ ଭାବି, କହି ପକାଇଥିଲେ—ହୁମ୍ କେଉଁଠାକୁ ବିଜେ କରୁଛନ୍ତି କି ? ଅତନୁ ବାବୁ ସଙ୍କୁଚିତ ହୋଇ କହିଥିଲେ—ଆଜ୍ଞା ନମସ୍କାର, ଆପଣ ବୋଧହୁଏ ଭୁଲ କରିଛନ୍ତି । ମୁଁ ତ କୌଣସି ରାଜରାଜୁଡ଼ା ନୁହେଁ, ନିହାତି ସାଧାରଣ ଲୋକଟିଏ । ମୋତେ 'ହୁମ୍' ବୋଲି ସମ୍ବୋଧନ କରୁଛନ୍ତି କାହିଁକି ? ଏପରି ସ୍ଥଳେ ଅତନୁ ବାବୁଙ୍କ ଚେହେରା ଆଉ ତାଙ୍କ ମୋଟର ଗାଡ଼ି ଦେଖି ଯଦି କେହି ତାଙ୍କୁ ବଡ଼ଲୋକ ବୋଲି ଠଉରାଇ ନିଏ, ତେବେ ଲୋକଙ୍କର ଦୋଷ କ'ଣ ? କିନ୍ତୁ ଅତନୁ ବାବୁଙ୍କ ଆୟକୁ ବ୍ୟୟ ଯେ ବଳିପଡ଼େ ଏ କଥା ଲୋକେ ବୁଝିବେ କିମିତି ?

କଟକ ସହରରେ ଦଶହରା । ପ୍ରତି ସାହିରେ ବି ଷିନଟା କରି ମେଢ଼ । କେଉଁଠି ଦୁର୍ଗା ଠାକୁରାଣୀ ତ କେଉଁଠି ମହାଦେବ, କେଉଁଠି ବା କାଳୀୟ ଦଳନ ବା କେଉଁଠି ଶମ୍ବରାସୁର ଯୁଦ୍ଧ । କଟକ କାରିଗରି କୌଶଳ ଏଇଠି ଫୁଟିଉଠେ ବର୍ଷକର ଏଇ ଷିନଟା ଦିନ ଭିତରେ । ସେଇଥି ପାଇଁ ପ୍ରାୟ ମାସକ ଆଗରୁ ଚାନ୍ଦାଉଠାର ଧୂମ୍ ଲାଗେ । ଅତନୁ ବାବୁ ଯେଉଁ ପଡ଼ାରେ ଥାନ୍ତି ସେହି ପଡ଼ାର ଚାନ୍ଦାଉଠାଳି ଦଳ ଥରେ ସଞ୍ଜବେଳେ ଆସି ଅତନୁ ବାବୁଙ୍କ ଦୁଆରେ ହାଜର—ଚାନ୍ଦା ଦିଅ ! ସାହିବାଲାଙ୍କୁ ଚାନ୍ଦା ନଦେଲେ ନଚଳେ । କାରଣ ଏଇ ସାହିବାଲାଙ୍କୁ ସନ୍ତୁଷ୍ଟ ନ ରଖିଲେ

Digitized by srujanika@gmail.com

ବପଦର ସମ୍ଭାବନା ନିଶ୍ଚିତ । ସେଥିପାଇଁ ଅତନୁ ବାବୁଙ୍କ ଗୃହିଣୀ ପୂର୍ବ ବର୍ଷ ପରି ଟଙ୍କାଟିଏ ଚାନ୍ଦା ପଠାଇଦେଲେ ପ୍ଲେଟ ପୂଅଟି ହାତରେ । ଚାନ୍ଦାଉଠାଳି ଦଳ କହିଲେ—ନା ଏତିକି ହେବ ନାହିଁ, ଏ ବର୍ଷ ବଜାର ଦର ବଢ଼ିଯାଇଛି—ସୁତରାଂ ମେଢ଼ ଖର୍ଚ୍ଚ ବି ବଢ଼ିଯାଇଛି । ସେଥିପାଇଁ ପୂଜା କମିଟିରେ ସ୍ଥିର ହୋଇଛି ଯେ ଏ ବର୍ଷ ବେଶୀ ବେଶୀ ଚାନ୍ଦା ଉଠିବ । କିନ୍ତୁ ଗୃହିଣୀ ଚିରାଚରିତ ପନ୍ଥାକୁ ବ୍ୟତିକ୍ରମ କରିବାକୁ ନାରାଜ । କାରଣ ତାଙ୍କ ବଜେଟ ଯେ ଧରାବନ୍ଧା । ତାଙ୍କ ହାତକୁ ଟଙ୍କା ଆସେ ତ, କିନ୍ତୁ ଆସିଲା ମାତ୍ରେ ପୁଣି ବାଟ ଖୋଜେ କିପରି ଚାଲିଯିବ । ଏପରି ସ୍ଥଳେ ସେ ବେଶୀ ଚାନ୍ଦା ବା ଦେଇ ପାରିବେ କାହୁଁ ? ଏମିତି ଟଣାଓଟରା ଚାଲିଥିବା ବେଳେ ଅତନୁ ବାବୁ ଆସି ପହଞ୍ଚିଲେ । ଚାନ୍ଦାଉଠାଳି ଦଳ ତାଙ୍କୁ ଘେରିଯାଇ କହିଲେ—"ଆଜ୍ଞା, ଆପଣ ବଡ଼ଲୋକ, ଆପଣ ଯଦି ଟଙ୍କା ଦଶଟା ନ ଦେବେ ତ ଆଉ ଦେବ କିଏ ? ଅତନୁ ବାବୁ ବହୁ ଚେଷ୍ଟା କରି ଆପଣାର ଅଭାବ ଅସୁବିଧା କଥା ବୁଝାଇବାକୁ ଲାଗିଲେ । କିନ୍ତୁ ଚାନ୍ଦାଉଠାଳି ଦଳ ନିର୍ଘ୍ରୋତ୍ତବନ୍ଧା !

"ଆଜ୍ଞା, ଆପଣ ବଡ଼ଲୋକ, ଆପଣଙ୍କର ମୋଟର ଗାଡ଼ି ଅଛି । ଆପଣମାନେ ଯଦି ଚାନ୍ଦା ନ ଦେବେ ତ ହବ କିମିତି ? ଶେଷରେ ଅତନୁ ବାବୁ ପାଞ୍ଚୋଟି ଟଙ୍କା ଦେଇ ଚାନ୍ଦାଉଠାଳି ଦଳଙ୍କୁ ବିଦାୟ ଦେଲେ । ତା ପରେ ଘରେ ନ ପଶୁଣୁ ବାହାରୁ ଡାକ ଶୁଭିଲା—ଆଜ୍ଞା ଚାନ୍ଦା ! ପୁଣି କି ଚାନ୍ଦା ? ଗୃହିଣୀ କହିଲେ—ଠାକୁରାଣୀବାଲା ସିନା ନେଲେ, ଏମାନେ ଆସିଛନ୍ତି ମହାଦେବ ମେଢ଼ବାଲା । ପୁଣି ସେଇ ଟଣାଓଟରା, ସେଇ ଯୁକ୍ତି—ଆପଣ ବଡ଼-ଲୋକ, ଆପଣ ବେଶୀ ଚାନ୍ଦା ନ ଦେବେ ତ ହେବ କିମିତି ? ଅତନୁ ବାବୁ ପୁଣି ବାଧ୍ୟ ହୋଇ ପାଞ୍ଚୋଟି ଟଙ୍କା ଚାନ୍ଦା ଦେଲେ ।

Digitized by srujanika@gmail.com

ତା ପରେ ଗୃହିଣୀ କହିଲେ, ଗାଁରୁ ଚିଠି ପାଇଛନ୍ତି । ଅତନୁ ବାବୁ ସିନା ବିଦେଶରେ ଚାକିରି କରି ଆଜୀବନ କଟାଇଲେଣି, କିନ୍ତୁ ଗାଁ ସହିତ ତ ସମ୍ପର୍କ ତୁଟି ନାହିଁ । କାରଣ ସେଇଟା ଯେ ତାଙ୍କର ଜନ୍ମମାଟି । ଗାଁରୁ ଚିଠି ଆସିଛି । ଏବର୍ଷ ଗାଁରେ ଦୁର୍ଭିକ୍ଷ । ଲୋକେ ଖାଇବାକୁ ପାଉନାହାନ୍ତି । ତଥାପି ପୂର୍ବ ପ୍ରଥାନୁସାରେ ଗାଁରେ ତ ଦୁର୍ଗାପୂଜା ହେବ । ସେଥିପାଇଁ ଗାଁ ଲୋକଙ୍କର ଅନୁରୋଧ କିଛି ଚାନ୍ଦା ପଠାଇବାକୁ ହେବ । ବିଶେଷତଃ ଆପଣଙ୍କ ପରି ବଡ଼ଲୋକ ଚାନ୍ଦା ନ ଦେବେ ତ ଗାଁର ଯାନି ଯାତ୍ରା ପୂଜାପାର୍ବଣ ଚାଲିବ କିମିତି ? ପୁଣି ସେଇ ଯୁକ୍ତି— ଅତନୁ ବାବୁ ବଡ଼ଲୋକ, ସୁତରାଂ ଗାଁର ଯାନିଯାତ୍ରା ପାଇଁ ଚାନ୍ଦା ନଦେଲେ ନ ହୁଏ । ଚିଠିଟା ପଢ଼ିଲା ମାତ୍ରେ ଅତନୁ ବାବୁଙ୍କ ମନେ ପଡ଼ିଲା ଦି’ ବର୍ଷ ତଳେ ସେ ଥରେ ଗାଁକୁ ଯାଇଥିଲେ । ଗାଁର ଜଣେ ବୁଢ଼ା ଲୋକ ଆସି ତାଙ୍କୁ କେତେ ଦରମା ପାଉଛ ବୋଲି ପଚାରିଲା । ଅତନୁ ବାବୁ ଯେତେବେଳେ ତାଙ୍କ ଦରମା କଥା କହିଲେ ବୁଢ଼ାଟି ଆଙ୍ଗୁଳି ଅଗରେ କଣ ଗଣିପକାଇ କହିଲା, “ଆଜ୍ଞା, ତା ହେଲେ ତ ଆପଣ ଲକ୍ଷେ ଟଙ୍କା ଜମା ରଖିବେଣି ! ବୁଢ଼ାଟିର କଥା ଶୁଣି ଅତନୁ ବାବୁ ହସି ହସି ବେଦମ୍ ହୋଇଥିଲେ । କାରଣ ବୁଢ଼ାଟି ତା ଗାଁର ଲୋକେ ଯେତିକି ଖର୍ଚ୍ଚରେ ଚଳୁଛନ୍ତି ସେଇ ମାନଦଣ୍ଡରେ ହିସାବ କରିପକାଇ କହିଥିଲା ଯେ ଅତନୁ ବାବୁ ଲକ୍ଷପତି । ବୁଢ଼ାଙ୍କର ଗାଣିତିକ ହିସାବ ନିଶ୍ଚୟ ଠିକ୍ ।

ତା ପରଦିନ ସକାଳେ ଅତନୁ ବାବୁ ପୁଣି ତାଙ୍କ କର୍ମସ୍ଥଳକୁ ଫେରିଗଲେ । ନୂଆ ସହର ସେଟା । ସେଠାରେ ରହନ୍ତି ସରକାରୀ ଚାକିରିଆମାନେ । ଉପରୁ ତଳ ପର୍ଯ୍ୟନ୍ତ କେତେ ପାହାଚର କର୍ମଚାରୀ । ଚପ୍ରାସୀଠାରୁ ଆରମ୍ଭ କରି ଆଇ. ଏ. ଏସ୍. ସେକ୍ରେଟାରୀ

Digitized by srujanika@gmail.com

ପର୍ଯ୍ୟନ୍ତ । ନୂଆ ରାଜଧାନୀରେ ନୂଆ କରି ପ୍ରଜାପାଳନରେ ସୃଷ୍ଟି କରିଯାଉଛି—ଚାନ୍ଦା ଉଠୁଛି, ବିଭିନ୍ନ ଦଳ ଚାନ୍ଦା ଉଠାଇବାକୁ ବାହାରିଛନ୍ତି । ପ୍ରଥମେ ଆସିଲେ କରଣୀ ଦଳ । ତାଙ୍କ ଆଖିରେ ଅତନୁ ବାବୁ ବଡ଼ଲୋକ । କାରଣ ସେ ଯେଉଁ ଘରେ ରହିଛନ୍ତି ସେଇ ଘରଟା ବଡ଼ ସାଇବଙ୍କର ରହିବା ଘର । ସୁତରାଂ ସେଇ ଘର ଅନୁପାତରେ ସେ ଅତନୁ ବାବୁଙ୍କଠାରୁ ଚାନ୍ଦା ଉଠାଇବାକୁ ଚାହାନ୍ତି । ଅତନୁ ବାବୁ ବହୁ ଯୁକ୍ତିତର୍କ କରି କହିଲେ ତାଙ୍କ ପରିବାର କଟକରେ ରହୁଛନ୍ତି । ସେ ସେଠାରେ ଚାନ୍ଦା ଦେଇ ଆସୁଛନ୍ତି । କିନ୍ତୁ ତାଙ୍କ କଥା କିଏ ଶୁଣେ ? ଯୁକ୍ତ ଚାଲିଲା— ଆପଣ ତ ବଡ଼ଲୋକ, ସେଥିପାଇଁ କଟକରେ ଘର କରିଛନ୍ତି, ପରିବାର ରଖିଛନ୍ତି । ତା' ବୋଲି କଣ ଆମ ନୂଆ ସହରରେ ଚାନ୍ଦା ଦେବେ ନାହିଁ ? ହାୟରେ କପାଳ ! ଅତନୁ ବାବୁ କଟକରେ ଯେଉଁ ଘରଟାରେ ରହୁଛନ୍ତି ସେଟା ତାଙ୍କ ନିଜ ଘର ନୁହେଁ, ଭଡ଼ାଘର । ଆଜ ବାଧ ହୋଇ ପିଲାପିଲାଙ୍କ ପାଠପଢ଼ା ଲାଗି ସେ ଦୁଇଟା ଘର ଭଡ଼ା ନେଇ ସର୍ବସ୍ୱାନ୍ତ ହେଉଛନ୍ତି ସେ କଥା କେହି ବୁଝିଲେ ନାହିଁ । ଯେଉଁ କରଣୀ ଦଳ ଚାନ୍ଦା ଉଠାଇବା ପାଇଁ ଆସିଥିଲେ ସେମାନେ ଅତନୁବାବୁଙ୍କଠାରୁ ବହୁଗୁଣରେ କମ୍ ଦରମା ପାଉଥିଲେ ମଧ୍ୟ ପ୍ରାୟ ଅନେକେ କଟକରେ ଘର ତିଆରି କରି ସାରିଛନ୍ତି । ଏପରି ସ୍ଥଳେ ଏତେ ଦରମା ପାଇ ଯେ ଅତନୁ ବାବୁ ଭଡ଼ା ଘରଟାରେ ପିଲାପିଲାଙ୍କୁ ରଖିଛନ୍ତି, ଏକଥା ମାନିବାକୁ ନାରାଜ ସେମାନେ । ଚାନ୍ଦା ନେବେ, ପୁଣି ଅତନୁ ବାବୁ ବଡ଼ଲୋକ, ତାଙ୍କ ଅନୁପାତରେ ଚାନ୍ଦା ନେବେ ।

କରଣୀ ଦଳ ଗଲା ପରେ ଆସିଲେ ଚପ୍ରାସୀ ଦଳ । ତାଙ୍କର ମହାଦେବ ମେଡ଼ । ନୂଆ କରି କରୁଛନ୍ତି । ଆଜ୍ଞା ଚାନ୍ଦା । ଅଳ୍ପସ୍ୱଳ୍ପ

Digitized by srujanika@gmail.com

ନୁହେଁ । ଆପଣ ତ ବଡ଼ଲୋକ, ଆପଣଙ୍କ ଅନୁରୂପ ଗୃହ ଦେବା ଦରକାର । ଚପ୍ରାସୀ ଦଳର ଅଗ୍ରଣୀ ହୋଇଛନ୍ତି ଟ୍ରେଜରି ପିଅନ୍ । ସେ ଅତନୁ ବାବୁଙ୍କ ଦରମା ଓ ଗସ୍ତଖର୍ଚ୍ଚ ଇତ୍ୟାଦି ଟ୍ରେଜରିରୁ ଆଣି ଦିଏ । ଅତନୁ ବାବୁ ଯେତେବେଳେ କହିଲେ ସେ ଟଙ୍କାକରୁ ବେଶୀ ଦେଇପାରିବେ ନାହିଁ, ସେତେବେଳେ ଟ୍ରେଜରି ପିଅନ୍ କହିଲା, "ଆଜ୍ଞା, ଦି' ଦିନ ତଳେ ତ ଆପଣଙ୍କର ଗସ୍ତ ଖର୍ଚ୍ଚ ବିଲ୍ ତିନି ଶହ ଟଙ୍କା ଭଙ୍ଗାଇ ଆଣିଛି । ଦରମାରୁ ନ ଦେଲେ ନାହିଁ, ସେଇଥିରୁ କାଟି ଦିଅନ୍ତୁ ।" ହାୟରେ କପାଳ ! ଟ୍ରେଜରି ପିଅନ୍ ସିନା ଟ୍ରେଜରିରୁ ଗସ୍ତ ଖର୍ଚ୍ଚ ଆଣିଲା, କିନ୍ତୁ ପେଟ୍ରୋଲବାଲାର ଯେ ପାଞ୍ଚ ଶହ ଟଙ୍କା ପେଟ୍ରୋଲ୍ ବିଲ୍ ବାକି ଅଛି, ମୋଟର ମରାମତି କାରଖାନାର ଯେ ତିନିଶହ ଟଙ୍କା ବାକି, ମୋଟର-ପାର୍ଟ ବିକ୍ରିକଲାବାଲାର ଯେ ଚାରିଶହ ବାକି, ସେତକ ଦେଉଁ ଦେଉଁ ବାବୁଙ୍କର ଗସ୍ତ ଖର୍ଚ୍ଚ ସବୁ ଯାଇ ଆହୁରି ଯେ ଦରମାରୁ କେତେ ଟଙ୍କା ଯାଉଛି ମୋଟର ଗାଡ଼ି ପିଁ, ଏକଥା ସେମାନେ ଜାଣିବେ କାହୁଁ ? ଅତନୁ ବାବୁ ବଡ଼ଲୋକ, ନିଶ୍ଚୟ ବଡ଼ଲୋକ । କାହିଁକି ନା ତାଙ୍କର ମୋଟର ଗାଡ଼ି ଅଛି । ପୁଣି ଏମିତି ସେମିତି ଗ୍ରୁଟିଆ ମୋଟିଆ ଗାଡ଼ି ନୁହେଁ, ଏକବାର ଶେଭେରଲେଟ୍ ଗାଡ଼ି ! ବଡ଼ ଗାଡ଼ି, କିନ୍ତୁ ସେଇ ଗାଡ଼ି ପିଁ ଯେ କେତେ ଖର୍ଚ୍ଚ ତା ତ କେହି ବୁଝନ୍ତି ନାହିଁ । ପୁଣି ବଡ଼ ଟାଇପ୍ ଘରେ ରହନ୍ତି । କିନ୍ତୁ ସେଇ ବଡ଼ ଟାଇପ୍ ଘରପାଇଁ ଯେ ତାଙ୍କ ଦରମାର ଦଶ ଭାଗରୁ ଭାଗେ କଟିଯାଏ, ସେକଥା ତ କେହି ବୁଝନ୍ତି ନାହିଁ ! ଚପ୍ରାସୀଦଳ ତାଙ୍କ ଦରମା ଅନୁସାରେ ହିସାବ କରି ବସନ୍ତି—ସେ ତ ସେତିକରେ ଚଳୁଛନ୍ତି । ନହେଲା, ବାବୁ ବଡ଼ଲୋକ ବୋଲି ତାଙ୍କ ଖର୍ଚ୍ଚ ଦୁଇଗୁଣ ହେଉ, ତିନିଗୁଣ ହେଉ ! ବାକି ଟଙ୍କାତକ

Digitized by srujanika@gmail.com

କଣ କରୁଥିବେ ? ସବୁ ନିଶ୍ଚୟ ଜମା କରି ରଖୁଥିବେ । କିନ୍ତୁ ବାବୁଙ୍କର ଯେ ଆୟ ଯାଞ୍ଚରୁ ବ୍ୟୟ ସାତ ଏକଥା ଅନ୍ୟ କିଏ ଜାଣିବ କାହିଁ ?

ଅତନୁ ବାବୁ ବଡ଼ଲୋକ । ହଁ, ବଡ଼ଲୋକ ସତ, କିନ୍ତୁ ଠିକ୍ ଗୋଟାଏ ମୋଟା ବାଉଁଶ ପରି ଉପରଟା ଯେତେ ମୋଟା ଭିତରଟା ସେତିକ ପୋଲ, ଏ କଥା ଦୁନିଆ ବୁଝିବା ପାଇଁ ନାରାଜ ।

ପ୍ରତି ପହିଲାରେ ଅତନୁ ବାବୁ ଯାହା ପାଆନ୍ତି ପନ୍ଦର ତାରିଖ ପୂର୍ବରୁ ସବୁ ସରିଯାଏ । ତେଣିକି ଚାଲେ ଖାଲି ବଡ଼ଲୋକି ଖାତିରରେ ଧାର୍ । ପୁଣି ପହିଲା ପରେ ଆସେ ବିଲ୍ ଗୋଟାକୁ ଗୋଟା । ବିଲ୍ ଶୁଝି ଶୁଝି ସବୁ ଫାଙ୍କ୍ । ଉପରକୁ ଖାଲି ମୋଟା ବାଉଁଶଟାଏ ସିନା କିନ୍ତୁ ଭିତରଟା ଏକବାର ଫାଙ୍କ୍, ଶୂନ୍ !

---

# ଶିକାର

ସେ ଅଞ୍ଚଳରେ ପିନୁଆର ନାମ ବିଖ୍ୟାତ—ଶିକାରୀ ସ୍ୱଭାବରେ । ତାର ପ୍ରଧାନ ଅସ୍ତ୍ର ନିଜର ହାତ ତିଆରି ଧନୁଶର । ସେ ଶର ମାରିଲା ବେଳେ ଚିତ୍ ହୋଇ ଶୋଇ ପଡ଼େ, ବାଁ ପାଦଟି ଧନୁରେ ଲଗାଇ ଦେଇ କାନ ପର୍ଯ୍ୟନ୍ତ ଶରଟି ଟାଣି ନେଇ ଛୁଡ଼ିଦିଏ । ମାଇଲିଏ ଦୂରରୁ ଶର ମାରି ସେ ଲକ୍ଷ ବିନ୍ଧି ପାରେ । ଏହି ଧନୁଶର ସାହାଯ୍ୟରେ ସେ ହରିଣ, ଶମ୍ବର, ବାଘ, ଭାଲୁ ମାରିଛି ଅଗଣନ; ଚିତାବାଘ ବି ମାରିଛି ଅନେକ । କିନ୍ତୁ ମହାବଳ ମାରିଛି ମୋଟେ ଦୁଇଟି । ମହାବଳ ଦୁଇଟି ମାରି ସେ ଡେପୁଟି କମିଶନରଙ୍କ ଠାରୁ ବେଶ୍ ପୁରସ୍କାର ପାଇଛି ମଧ୍ୟ ।

Digitized by srujanika@gmail.com

ସେଦିନ ଭୋରରୁ ସେ ଏକ ଅଦ୍ଭୁତ ଶିକାର ନେଇ ଡେପୁଟି କମିଶନରଙ୍କ ବଙ୍ଗଳା ପାଖରେ ହାଜର । ଗୋଟିଏ କାନ୍ଧରେ ତାର ଧନୁଟି ଝୁଲୁ ଛି, ହାତରେ ଦୁ' ତିନିଟା ଶର, ଆଉ କାନ୍ଧରେ ଟାଙ୍ଗିଟି ପଡ଼ିଛି । ଘିନୁଆକୁ ଏ ବେଶରେ ଦେଖି ଅର୍ଦ୍ଦଳି ପଚାରିଲା—

"କିରେ, ଆଜି କି ଶିକାର ଆଣିଚୁ ?"

ଘିନୁଆ ସଙ୍ଗେ ତାର ଭଲ ଜଣାଶୁଣା । ତାର ବକ୍‌ସିସ୍‌ର ଅଂଶୀଦାର ସେ କେତେ ଥର ହୋଇଛି । ଉତ୍ତରରେ ଘିନୁଆ ତାର ମଇଳା ଦାନ୍ତ ଦୁଇ ଧାଡ଼ି କେବଳ ଦେଖାଇଲା । ସେ ହସିଲା କି ଖେଁକିଲା ଜାଣିବାର ଉପାୟ ନାହିଁ । ପ୍ରକୃତରେ ହସ ବୋଲି ଯାହାକୁ କୁହାଯାଏ, ଘିନୁଆଠାରେ ତାହା କେହି କେବେ ଦେଖି ନାହିଁ । ବେଳେ ବେଳେ ସେ ଏହିପରି ଦାନ୍ତ ଦେଖାଏ । ତାହା ହସ ନୁହେଁ କି କାନ୍ଦ ନୁହେଁ—କେବଳ ଦାନ୍ତଦେଖା ।

ଅର୍ଦ୍ଦଳି ପଚାରିଲା, "କି ବେ, କି ଶିକାର ଆଣିଚୁ ?"

ଘିନୁଆ ତାହାର ଗାମୁଛାରେ ବନ୍ଧା ହୋଇଥିବା ଗୋଟିଏ ପଦାର୍ଥକୁ ଦେଖାଇ କହିଲା ଯେ, ସେ ଆଜି ଏକ ମସ୍ତ ଜାନୁଆର ଶିକାର କରିଛି ।

ଅର୍ଦ୍ଦଳି ପଚାରିଲା, 'ବାଘ ?'

ଘିନୁଆ ମୁଣ୍ଡ ହଲାଇ ନାହିଁ ଜଣାଇଲା ।

"ତେବେ କ'ଣ, ଚିତା···ଭାଲୁ···ବାଘ··· ?"

ଘିନୁଆ କେବଳ ମୁଣ୍ଡ ହଲାଇ ଗଲା ।

"ଆଉ ତେବେ କଅଣ ବେ ?"

Digitized by srujanika@gmail.com

ଗୋଳମାଳ ଶୁଣି ସାହେବ ବଙ୍ଗଳା ଭିତରୁ ବାହାର ଆସିଲେ । ଘିନୁଆ ମୁଣ୍ଡିଆ ମାରି ପୁଣି ସାହେବଙ୍କୁ ସେହିପରି ଦାନ୍ତ ଦେଖାଇଲା । ସାହେବ ଶିକାରର ଚେହେରା ଦେଖିବାକୁ ଔତ୍ସୁକ୍ୟ ପ୍ରକାଶ କରିବାରୁ ଘିନୁଆ ଗାମୁଛା ଭିତରୁ ବାହାର କରି ସାହେବଙ୍କ ପାଦ ତଳେ ଥୋଇଲା ଗୋଟିଏ ସଜକଟା ମଣିଷମୁଣ୍ଡ ।

ସାହେବ ଚମକ ପଡ଼ି ପାହୁଣ୍ଡେ ଦୁଇ ପାହୁଣ୍ଡ ପଛେଇ ଗଲେ । ଘିନୁଆ ହାତ ବଢ଼ାଇ ମାଗିଲା, "ସାହେବ, ବକ୍‌ସିସ୍ ।" କିଛିକ୍ଷଣ ପରେ ମନକୁ ସମ୍ଭାଳି ନେଇ ସାହେବ ଘିନୁଆକୁ ବକ୍‌ସିସ୍ ପାଇଁ ଅପେକ୍ଷା କରିବାକୁ ଇସାରା କଲେ ଓ ଭିତରକୁ ଯାଇ ଫୋନ୍‌ଦ୍ୱାରା ସଶସ୍ତ୍ର ପୋଲିସ ଫୌଜ ଡକାଇଲେ । ଏହା ବ୍ୟତୀତ ଘିନୁଆକୁ ଜବତ୍ କରିବାର ଉପାୟ ନାହିଁ । ଦେହରେ ତାର ଗୋଟାଏ ଅସୁରର ବଳ । ହାତରେ ପୁଣି ତାର ଧନୁଶର ଓ ଟାଙ୍ଗିଆ ରହିଛି ।

ଯେତେବେଳେ ହାତକଡ଼ି ଗୋଡ଼କଡ଼ି ପିନ୍ଧି ଘିନୁଆକୁ ହାଜତରେ ରହିବାକୁ ହେଲା, ସେ କିଛି ବୁଝି ପାରିଲା ନାହିଁ । ତାକୁ ଏପରି ଭାବରେ ଅଟକାଇ ରଖିବାର ମତଲବ କଅଣ ? ସୁବିଧା ପାଇଲେ ସେ କାହାରି କାହାରିକି ଏ ବିଷୟରେ ପଚାରେ । କିଏ କହେ ତାର ଫାଶୀ ହେବ, କିଏ କହେ ସେ ଯିବ କଳାପାଣି । କାହିଁକି ? ସେ ଏମିତି କି ଅପରାଧ କରିଛି କି ? କିଛି ବୁଝି ନ ପାରି ସେମାନଙ୍କ କଥାକୁ ସେ ବିଶ୍ୱାସ କରିପାରେ ନାହିଁ । ଶେଷରେ ଜଣେ ଡେପୁଟି କମିଶନର ପରିଦର୍ଶନ କରିବାକୁ ଆସିଥିଲେ । ସେ ତାଙ୍କୁହିଁ ସବୁ ହାଲ ପଚାରିଲା । ସେ କହିଲେ ଯେ, ପୂର୍ବରୁ ସେ ବାଘ ଭାଲୁ ମାରୁଥିଲା ବୋଲି ସଙ୍ଗେ ସଙ୍ଗେ ବକ୍‌ସିସ୍ ପାଉଥିଲା । ଏବେ ମାରିଛି ମଣିଷ । ଏଥର କି ବକ୍‌ସିସ୍ ପାଇବ

Digitized by srujanika@gmail.com

ତାହା ପାଞ୍ଚ, ଛ'ଜଣ ତ ଫେର ବୁଝି ବିଚାର ଠିକ୍ କରିବେ !
ଏହି କଥାଟା ହିଁ ଘିନୁଆ ମନକୁ ମାନିଲା ।

ଯେଉଁ ଦିନ ତାର ବିଚାର ହେଲା, ଘିନୁଆ ମନେ ମନେ ଭାବିଲା, ସେଦିନ ତାକୁ ବକ୍‌ସିସ୍ ମିଳିବ । ସେ ଉତ୍ସାହିତ ହୋଇ ଜଜ୍‌ଙ୍କ ଆଗରେ ସବୁ ବିବରଣ କହିବାକୁ ଲାଗିଲା, ସେ ଯେ ଗୋବିନ୍ଦ ସରଦାରକୁ ହାଣିଲା, ସେଥିପାଇଁ ତାକୁ କମ୍ କଷ୍ଟ କରିବାକୁ ପଡ଼ ନାହିଁ । ଆଜ ଅନେକ ଲୋକ ତାକୁ ମାରିବାକୁ ଛକିଥିଲେ, କିନ୍ତୁ କେହି ପାରି ନ ଥିଲେ । ଗୋବିନ୍ଦ ସରଦାର ଯେ ସବୁବେଳେ ମଠରରେ ଯିବା ଆସିବା କରେ । ସେ ତାର ଧନ ସମ୍ପତ୍ତି କମେଇଛି ଅନ୍ୟ ସମସ୍ତଙ୍କୁ ଲୁଟି କରି । ବଡ଼ ଦଇତାନ ଲୋକ ଥିଲା ସେ । କେତେ ଲୋକଙ୍କୁ ସେ ମାରିଛି, କେତେ ଲୋକଙ୍କୁ ଉଚ୍ଛନ୍ନ କରିଛି, କେତେ ସ୍ତ୍ରୀ ଲୋକଙ୍କର ଇଜ୍ଜତ ନେଇଛି, ତାହାର ଠିକଣା ନାହିଁ--ଘିନୁଆର ସବୁ ଜମିବାଡ଼ି ମଧ୍ୟ ନେଇ ନିଜର କରିଛି । ସେଦିନ ସନ୍ଧ୍ୟାରେ ଘିନୁଆର ସ୍ତ୍ରୀ ଉପରେ ଅତ୍ୟାଚାର କରିବାକୁ ବସିଥିଲା । ଏତେ ବଡ଼ ବଦିଦ ! ଘିନୁଆକୁ ଦେଖି ମଠରରେ ପଳାଉଥିଲା । ତା ହାତୁଡ଼ିରୁ ଖସି ଚାଲିଯିବ ! ତାର ମଠର ଚକକୁ ଶର ମାରି ଘିନୁଆ ମଠରକୁ ଅଚଳ କରିଥିଲା । ତା ପରେ ଟାଙ୍ଗିରେ ତାର ମୁଣ୍ଡଟି କାଟି ଦେଇ ସିଧା ଦୌଡ଼ିଲା, ଘାଟ ଘାଟ ବଣ ଜଙ୍ଗଲ ଭିତର ଦେଇ । ତିରିଶ ମାଇଲ ରାସ୍ତା ଏକା ନିଶ୍ୱାସକେ ଦୌଡ଼ି ସେ ଡେପୁଟି କମିଶନରଙ୍କ ବଙ୍ଗଳା ପାଖରେ ହାଜର ହେଲା ।

ଗୋବିନ୍ଦ ସରଦାର ସାମାନ୍ୟ ଲୋକ ନୁହେଁ । ହାତରେ ତାର ଥାଏ ସବୁବେଳେ ବନ୍ଧୁକ । ବାଘ-ଭାଲୁଙ୍କ ଅପେକ୍ଷା ଲୋକେ ତାକୁ ବେଶୀ ଭୟ କରନ୍ତି । ବାଘ-ଭାଲୁଙ୍କ ଅପେକ୍ଷା ସେ ଲୋକଙ୍କର

Digitized by srujanika@gmail.com

ଷଣ୍ଡ କରେ ଢେର ବେଶୀ । ତାକୁ ମାରିବା ପାଇଁ ଘିନୁଆ କମ୍ ସାହସ ଓ ବଳଷଣତା ଖର୍ଚ୍ଚ କରି ନାହିଁ ।

କିଛି ବର୍ଷ ତଳେ ମେଳିଆ ଝପଟସିଂର ମୁଣ୍ଡ କାଟି ଥିବାରୁ ସାହେବ ଡୋମ୍ବକୁ ପାଁଶ ଟଙ୍କା ବକ୍‌ସିସ୍ ଦେଇଥିଲି । ଝପଟସିଂ ତ ଏକ ରକମ ଭଲ ଲୋକ ଥିଲା । ସେ ସ୍ତ୍ରୀ ଲୋକଙ୍କ ଇଜ୍ଜତ ନେଇ ନାହିଁ, କି କାହାରି ଜମିବାଡ଼ି ଦଖଲ କରି ନାହିଁ । ସେ କେବଳ ଖଜଣାଖାନା ଲୁଟି କରିଥିଲା, ଆଉ କେତେ ଜଣ ସିପାହିଙ୍କୁ ମାରିଥିଲା । ଗୋବିନ୍ଦ ସରଦାର କିନ୍ତୁ ବଡ଼ ଭୟଙ୍କର ଲୋକ । ତାକୁ ମାରିଥିବାରୁ ଘିନୁଆକୁ ଅଧିକ ବକ୍‌ସିସ୍ ମିଳିବା ଉଚିତ ।

ଘିନୁଆର ଗଳ୍ପ ଶୁଣି ସମସ୍ତେ ହୋ ହୋ ହୋଇ ହସି ଉଠିଲେ । ଜଜ୍ ସାହେବ ହସି ହସି କହିଲେ, "ହଁ, ଉପଯୁକ୍ତ ବକ୍‌ସିସ୍ ଦିଆଯିବ ।" ସରକାରୀ ଓକିଲ କହିଲେ, "ତତେ ଏଠାକୁ ଖାସ୍ ଅଣା ହୋଇଛି ବକ୍‌ସିସ୍ ଦିଆଯିବା ଲାଗି ।"

ଘିନୁଆ ଏହାକୁ ପରିହାସ ନ ମଣି ସତ ବୋଲି ମନେ କଲା । କାରଣ ହସ କୌତୁକ, ଥଟ୍ଟା ପରିହାସ ସେ ଜାଣେ ନାହିଁ । ତାର ଯେ ନିତାନ୍ତ ନିରାଟ ରସଶୂନ୍ୟ ପ୍ରକୃତି ।

ଶେଷରେ ରାୟ ଦିଆଗଲା—ପ୍ରାଣଦଣ୍ଡ । ଘିନୁଆ ଏହାର କୌଣସି ଅର୍ଥ ବୁଝିଲା ନାହିଁ । ପୁଣି ଜେଲକୁ ଫେରାଇ ତାକୁ ବୁଝାଇ ଦିଆଗଲା ଯେ, ତାର ବକ୍‌ସିସ୍ ପାଇବାର ଦିନ ଆସୁଛି ।

ଘିନୁଆ ସେ ପର୍ଯ୍ୟନ୍ତ ବୁଝିଲା ନାହିଁ ଯେ, ସେ ଜଣେ ଅପରାଧୀ ଓ ସେଥିଲାଗି ତାକୁ ପ୍ରାଣଦଣ୍ଡ ଆଦେଶ ହୋଇଛି । ଝପଟସିଂକୁ ମାରିବା ଓ ଗୋବିନ୍ଦ ସରଦାରକୁ ମାରିବା ଯେ ଏକା କଥା ନୁହେଁ, ତାହା ସେ ବୁଝିବ କାହୁଁ ? ସେ ଜାଣିଲା ନାହିଁ ଯେ ଗୋଟିଏ

Digitized by srujanika@gmail.com

ଗୌରବର ବିଷୟ, ଅନ୍ୟଟି ଦୋଷାବହ । ଆଇନର ସୂକ୍ଷ୍ମ ଜାଲ ଭିତରେ ପଶିବାକୁ ତାର ମୁଣ୍ଡ ନାହିଁ । ସେ ଯେ ବଣୁଆ ସାନ୍ତାଳ ।

ସେ ମନେ ମନେ ଭାବେ, ଡୋବା ପାଁଚ ଟଙ୍କା ପାଇଛି ଝିପଟସିଂକୁ ମାରି । ସେଥିରୁ ବେଶୀ ନ ଦେଲେ କାହିଁକି ନେବ ? ସବୁ ଫେରାଇ ଦେଇ କହିବ, "କିଛି ନ ଦିଅ ପଛେ ସାହେବ, ଡୋବା ଠାରୁ ବେଶୀ ପାଇବା ମୋର ହକ୍ ।"

ଜେଲର ଅନ୍ଧାରିଆ ନିର୍ଜନ ଗୁମ୍ଫାରେ ରହି ସେ କେତେ କ'ଣ ଭାବେ । କଥାବାର୍ତ୍ତା କରିବାକୁ ସେ କାହାରିକି ଦେଖେ ନାହିଁ । କଥାବାର୍ତ୍ତା କରିବାକୁ ବି' ତାର ଆଗ୍ରହ ନ ଥାଏ । କେବଳ ବକ୍‌ସିସ୍ ପାଇ ଘରକୁ ଫେରିବାକୁ ତାର ମନ ଛଟପଟ ହେଉଥାଏ ।

ଶେଷରେ ତାର ଫାଶୀର ଦିନ ଆସିଲା । ତାକୁ ପଚରା ଗଲା, ତାର ଶେଷରେ କ'ଣ ଦରକାର । ସେ କହିଲା, "ମୋର ବକ୍‌ସିସ୍ ।" "ଆଚ୍ଛା, ବକ୍‌ସିସ୍ ପାଇବୁ ଆ" କହି ତାକୁ ନେଇ ଗଲେ । ମୁଣ୍ଡରେ ତାର ଗୋଟିଏ କଳା କନାର ଖୋଳ ପିନ୍ଧାଇ ଦିଆଗଲା । ଝିନୁଆ ମନେ ମନେ ବିଚାରିଲା—ଆଖିରେ ଅନ୍ଧପୋଟଳି ଦେଇ ହାତରେ ତାର ସୁନା ରୂପା ଡାଲି ଦିଆଯିବ । ସରକାର ଘରର କେତେ ଫନ୍ଦି ଫିକର, କାଇଦା କଟକଣା ଅଛି । ଖାଲି ସିମିତ କ'ଣ ବକ୍‌ସିସ୍ ଦିଆଯିବ ? ସେ ଘରକୁ ଫେରି ସବୁ ଦେଖାଇବ । କି ଖୁସି ହେବ ସ୍ତ୍ରୀ ତାର ସେ ସବୁ ଦେଖି ! ଭଲ ଘରଦ୍ୱାର କରି, ଜମିବାଡ଼ି ଚଷି ସେ ସୁଖରେ ରହିବ । ଆଉ ତ ଗୋବିନ୍ଦ ସରଦାର ନାହିଁ ଯେ ସବୁ ଲୁଟି କରିନେବ ।

ହଠାତ୍ କ'ଣ ଗୋଟାଏ ଆସି ତା ବେକରେ ବାଜିଲା ।

Digitized by srujanika@gmail.com

# ଭେଲି କକା

## ( ୧ )

ଜୀବନଟା ଗୋଟାଏ ଘଟଣାର ବନ୍ୟା । ତା'ର ସ୍ରୋତରେ ସବୁ କିଛି ଭାସି ଯାଏ ସମୟର ଅନନ୍ତ ଗର୍ଭ ଭିତରକୁ । କିନ୍ତୁ, ସେଥିରୁ ଇମିତି ଗୋଟିଏ ଗୋଟିଏ ଘଟଣାର ପ୍ରଭାବ ମଣିଷର ଚିନ୍ତା ଭିତରେ ବେଳେ ବେଳେ ଅଟକି ଯାଏ, ଯାହାକୁ ଇତିହାସ ବା କାଳ ଭସେଇ ନେଇ ପାରେନି । ମୋର ଏଇ ଛୋଟିଆ ଜୀବନରେ ଭେଲି କକା ସିମିତି ଗୋଟାଏ ପ୍ରଭାବ, ଯାହା ମୋର ଚିନ୍ତାକୁ ପାରମ୍ପରିକ ଆତ୍ମ ପ୍ରତାରଣା ଭିତରୁ ମୁକ୍ତ କରି ଗୋଟାଏ ନୂଆ ଦିଗନ୍ତରେ ଆଣି ଉତୁରେଇ ଦେଲା । ସେଥିଲାଗି ଭେଲି କକା ମୋ ମନରୁ ପାଶୋରି ଯାଇନି ।

ଗୋଟିଏ ଖଣ୍ଡିଳଟା ପାହାଡ଼ ତଳେ, ପ୍ରାୟ ଶହେ ଘରର ଛୋଟ ବସତି, ଆମ ଗାଁର ଅବସ୍ଥିତି । କୌଣସି ଭୌଗୋଳିକ ଅବା ଉଦ୍‌ବର୍ତ୍ତନ ସମ୍ବନ୍ଧୀୟ କାରଣରୁ ହୁଏତ ପର୍ବତ ଶ୍ରେଣୀର ପ୍ରସାର ହଠାତ୍ ଆମ ଗାଁ ନିକଟରେ ବାଧା ପ୍ରାପ୍ତ ହୋଇ ଯାଇଛି । କାରଣ ଆମ ଗାଁର ପଶ୍ଚିମ ଦିଗରେ, ପ୍ରାୟ ଦେଢ଼ ମାଇଲ୍ ପରେ, ଦିମବସ୍ତୃତ ବନାନୀର ଶ୍ରୀ ଓ ସମୃଦ୍ଧି ଭଲ ଭାବେ ଦେଖି ହୁଏ । ଆମ ଗାଁ ପରେ ବଡ଼ ପଥର ଖଣ୍ଡେ ବି ଆଖିରେ ପଡ଼ିବା ସୁଲଭ ନୁହେ । କଳା ଚିକଟା ମାଟିର କିଆରି ମାଳ, ସେଥି ଭିତରେ ଗାଉଁଲି ଜୀବନ ଉପଯୋଗୀ ନାନା ଜାତି ଗଛ ଗହଳି ଭିତରେ ଖଣ୍ଡିଏ ଲେଖା ଉଦାସ, ନିରାଡ଼ମ୍ବର ଗାଁ' ବସି ଯାଇଛି କେଉଁ ପୁରାତନ କାଳରୁ । ଦୂରରୁ ମନେ ହୁଏ, କେଉଁ ଯୋଗୀ ଯେପରି ନିର୍ବିକଳ୍ପ ସମାଧି ନେଇଛି ।

Digitized by srujanika@gmail.com

ପୋଖରୀ ହୁଡ଼ ଉପରେ ବସି ମୁଁ ବହୁ ବାର କଆଁରୀ ମାଳରେ ସମୂହ ବେଙ୍ଗ ରଡ଼ି ଶୁଣିଚ, ସୁନାର ଲହଡ଼ି ଦେଖିଚ, ଦୂର ମଶାଣିର ରଇ ନିଆଁକୁ ଅପଲକ ଆଖିରେ ଗୃହିଁଚ । ବଣ ପାଣି ଗଡ଼ି ଆସିଲେ ଗାଁର ବାଲୁତ ସଂସାର ଉତ୍ସବମୟ ହୋଇ ଉଠେ । ଦଳ ଦଳ ହୋଇ ଆମେ ଝଂପଟି ଯାଉଁ ସେଇ ଅପୂର୍ବ ଗଙ୍ଗା ସ୍ରୋତରେ ଦେହ ବୁଡ଼ାଇବା ପାଇଁ । ପାଣିର ଗୁପତ ଡାକରୀ ସମଜିବା ଜ୍ଞାନ ଆମ ଭିତରେ ସହଜାତ । ଧାନ କିଆରୀ ଭିତରେ ନୂଆ ଆଉ ପୁରୁଣା ପାଣିର ଭେଟ ହୁଏ । ମାଛ ଉଠି ଆସନ୍ତି କଟା ହୁଡ଼ ମୁହଁକୁ । ସେଇଠି ବେନ୍ଧାରେ ଧରା ପଡ଼ନ୍ତି । ଗଡ଼ିସ, ଫଳି, ଚିଙ୍ଗୁଡ଼ି, କେରାଣ୍ଡି—ନାନା ଜାତିର ମାଛ । ଜିରା, ଧନିଆ, ହଳଦି ବଟା ମୋ ବୋଉ ହାତର ରନ୍ଧା ବିଲ ମାଛ ତିଅଣର ସେ ରୁଚି, ନଗରୀର ବିଖ୍ୟାତ ଭୋଜନାଳୟର ଦୋକାନ, ଇଲିସି ଝୋଳରୁ ମଧ୍ୟ ମୁଁ ପାଇନି । ବିଲ ମାଛ ଓ ମୋ ବୋଉର ପାକ ଭିତରେ ଥିଲା ସ୍ନେହର ସ୍ୱାଦୁ; ଭୋଜନାଳୟର ଗଙ୍ଗା ଇଲିସି ବା ଚିଲିକା ଭେକିଟି ଭିତରେ ରହିଚ ବ୍ୟବସାୟୀର ବିଷ; ପ୍ରତିଯୋଗୀ ଅର୍ଥର ଅନର୍ଥ ।

ସେ ବୟସରେ ପଲ୍ଲୀର ଶ୍ରୀ ବୋଧ ମତେ ସ୍ୱତନ୍ତ୍ର ଭାବରେ ଆନନ୍ଦ ଦେଉ ନ ଥିଲା । ସେଇ ମାଟି, ପାଣି, ପବନ, ଧାନ, ମାଛ, ଗଛ ଭିତରୁ ମୁଁ ନିଜକୁ କେବେ ହେଲେ ଅଲଗା କରି ରଖି ପାରି ନଥାନ୍ତି । ମୋର ଆଜିର ଏ ସଂସ୍କୃତି ସେଇ କାଦୁଅ ମାଟି ପେଟରୁ ଗଜା ହୋଇ ଥିଲା । ନଗର ସଂସ୍କୃତି ଓ ସଭ୍ୟତାର ଟେକ୍‌ନିକ୍ ବର୍ଣ୍ଣସଙ୍କର ପ୍ରଣାଳୀରେ ତାକୁ ମାଣ୍ଡିଣାର ଫୁଲ ଗଛ କରି ପାରିନି । ହେଳ ଜଳ ମୋର ନାକ ଭିତରେ ଚେତନା ଫୁଙ୍କି ଦେଇଥିଲା ।

Digitized by srujanika@gmail.com

( ୨ )

ମୋର ବୟସ ଯେତେବେଳେ ସାତବର୍ଷ ବୁଝି ପାରିଲି, ଭୋଳ କକା, ମୋର କେବଳ ନୁହେଁ, ଗାଁ ଯାକର କକା । ଗୁଡ଼ିଆ ଘରୁ ଚଣା, ଖଜା, ଶାକର ସେ ମୋ ପାଇଁ କେବଳ ଆଣେନି, ଆଣେ ଅନ୍ୟ ପିଲାଙ୍କ ପାଇଁ ମଧ୍ୟ । ବେଳେ ବେଳେ ମୋର ରାଗ ହୁଏ ଭୋଳ କକାର ଏ ଆଚରଣ ଦେଖି । ମୋର ଭୋଳ କକା ଗାଁ ଯାକର କକା କାହିଁକି ହୁଅନ୍ତା ! ସେଇ ଭୋବନା, ମୁକୁନ୍ଦା, ସୋଲି, ରାଧି, ପଦ୍ମ ତା' ଉପରେ କାହିଁକି ଏତେ ଆବଦାର କରିବେ ? କହିବ ବୋଲି ଭୋଳ କକାକୁ କହିପାରେନି । କିନ୍ତୁ ଏଇ ଗୁମର ମନରେ ରଖି ବୋଉବୋଉକା ଖେଳିଲି ବେଳେ ଢେକ ଥରେ କଷି କରି ବିଧାଏ ମାଇଲି । ଢେଲା ଢେଲା ଆଖିରେ ମତେ ଥରେ ଚକଲରେ ଅନେଇ ଦେଇ ସେ ଘରକୁ ପଳେଇ ଯାଇ ଥିଲା । ଭୋଳ କକା ଭଳି ପଦ୍ମର ସେ ଗୁହାଣୀ ଏବେ ସୁଦ୍ଧା ମୋ ମନରେ ଚଟକା ରହିଛି ।

ଇଂରାଜୀ ପାଠଶାଳାରେ ଭରତି ହେବା ପାଇଁ ମୁଁ ପାଖ ସହରକୁ ସ୍ଥାନାନ୍ତରିତ ହେଲି । ଶଗଡ଼ରେ ଗଲାବେଳେ ଦଣ୍ଡା ତଡ଼ ଜାମୁ କୋଳି ଗଛ ମୂଳରୁ ଦୁଇଟି ନିହାଦ, ଅବୁଝା କଳା ଆଖି ମତେ ବଡ଼ ସନ୍ତର୍ପଣରେ ଗୃହିଁ ରହିଥିଲା । ରାଗରେ ମୁଁ ମୁହଁ ବୁଲେଇ ନେଇଥିଲି । ମୋର ଅନୁପସ୍ଥିତିରେ ଭୋଳ କକା ପାଖରୁ ଶାକର, ମିଠେଇ ଏମାନେ ତ ଖୁବ୍ ମଜାରେ ଖାଇବେ ! ପଦ୍ମ ଆଖିର ଭାଷା ବୁଝିବା ବେଳକୁ ମୁଁ ତା'ର ଦୁନିଆରୁ ଅଲଗା ହେଇ ସାରିଲିଣି । ମୋର ଏଇ ଶରଣପଞ୍ଜରର ଦୁନିଆରେ ଥିଲା ପାଉଡ଼ର୍ ଘଷା ଗାଲ, ବାସନାଓଦା ଆଖି, ଜଟିଳ କଥାର ଛଳ, ହବଡ଼ବଣିତା, ବରିଦକର ଅନୁରାଗ । ପଛରେ ରହିଗଲେ

Digitized by srujanika@gmail.com

କାଳିଆ ମାଟିର ଆମ ଗାଁ', ଭୋଳି କକା ଆଜି ଯଦି; ମୁଁ ଆଗେଇ ଗଲି ଧୂଳିର ସଡ଼କ ଉପରେ ପାଦ ପକାଇ ଫେରିବା ସହିତ କୌଣସି ସୁଦୂର ଲକ୍ଷ୍ୟ ଉଦ୍ଦେଶ୍ୟରେ ।

ଖରାଦିନ ଛୁଟିରେ ଆସି ପ୍ରାୟ ଅଢ଼େଇ ମାସ ମୁଁ ଗାଁରେ କଟେଇ ଥାଏ । କିନ୍ତୁ ଭୋଳି କକା ସଙ୍ଗେ ମିଶିବାର ପ୍ରୟୋଜନୀୟତା କେବେ ବିଶେଷ ଭାବେ ଅନୁଭବ କରିନି । ତୋଟା ମାଳରେ ବୂଲି ଆମ୍ବ ପାରିବା, ଅଠାକାଣ୍ଡିଆ ପକେଇ ଚଢ଼େଇ ଧରିବା, ପାହାଡ଼ ଚଢ଼ି କୋଳି ତୋଳିବା, ପିଲାଦିନର ଖେଳ ସାଥୀ କେଉଁ କିଶୋରୀର ବଲବଲ ଚାହାଣୀ ଆଗରେ ସରମି ଭରମି ଠିଆ ହେବା, ମଣ୍ଡପ ଉପରେ ବସି ପୁରାଣ ଶୁଣିବା ଅବା ଆଖଡ଼ା ଘରେ ଛାନ୍ଦ, ଚୌପଦୀ ଗାଇ ଶିଖିବା ଭିତରେ ଛୁଟି ଦିନ ତକ ବଡ଼ ଜଲ୍‌ଦି ସରି ଯାଏ । ମୁଁ ପୁଣି ଫେରି ଯାଏ ସହରକୁ ନୂଆ ପାଠ ଆବୃତ୍ତି କରିବା ପାଇଁ; ଗୋଟାଏ ଅଜ୍ଞାତ, ସମ୍ପୂର୍ଣ୍ଣ ବିପରୀତ ସଂସାର ଭିତରେ ରହି ଶିଖିବା ପାଇଁ । କିଶୋର ମନର ନିଥର, ନିର୍ମଳ, ସ୍ୱପ୍ନାବିଷ୍ଟ ମୁଖର ଚନ୍ଦ୍ରାଲୋକ ଭିତରେ ବାଳୁତ ମନର ଚଞ୍ଚଳ । ଭୋଳି କକା ନୀରବ ହୋଇ ଯାଇଥିଲି ।

( ୩ )

କଲେଜ ଛାଡ଼ିଲି ପରେ ମତେ ଗୋଟାଏ ବରଷ ରହି ଯିବାକୁ ହେଲି ଗାଁରେ । ପାରିବାରିକ କାରଣରୁ ଘରେ ରହିବା ମୋର ପ୍ରୟୋଜନ ଥିଲି । ଅଧିକନ୍ତୁ, ଜୀବିକା ସମ୍ବନ୍ଧେ ମୁଁ କିଛି ନିଷ୍ପତ୍ତି କରି ପାରି ନଥିଲି । ଏଇ ବର୍ଷକ ଭିତରେ, ପିଲା ଦିନର ପରିଚିତ ଉପରେ, ଭୋଳି କକା ସଙ୍ଗେ ମୋର ନୂଆ କରି ବନ୍ଧୁତା ସ୍ଥାପିତ ହେଲି । ଅସଲି ଭୋଳି କକାକୁ ଜାଣିବାର ସୁଯୋଗ ମୁଁ

Digitized by srujanika@gmail.com

ଏଥି ଭିତରେ ପାଇଲି । ବିଶ୍ୱବିଦ୍ୟାଳୟର ଶିକ୍ଷା ଅପେକ୍ଷା ଖେଲି କକାର ସାହଚର୍ଯ୍ୟ ମତେ ଅଧିକ ବିଶ୍ୱସ୍ତ ଭାବରେ ଜୀବନ ଦର୍ଶନର ଦିଗ ଦେଖେଇ ପାରି ଥିଲା ।

ସଦା ହସ ହସ ମୁହଁ, ପଞ୍ଚାବନ ବର୍ଷର ବୁଢ଼ା ଏ ଖେଲି କକା ଗାଁରେ ସବୁ ଠାରୁ ଗରିବ । ପାଞ୍ଚ ବର୍ଷର ପୁଅ ଓ ତିନି-ବର୍ଷର ଝିଅଟିଏ କକା କୋଳରେ ଦେଇ ସ୍ତ୍ରୀ ପଚିଶି ବର୍ଷ ତଳେ ଆଖି ମୁଦିଚନ୍ତି । ପିଲା ଦୁଇଟିକୁ ମାଆର ସ୍ନେହ ଓ ବାପାର ଦାୟିତ୍ୱ ଦେଇ କକା ମଣିଷ କଲେ । ପାଖ ଗାଁରେ ଝିଅ ତା'ର ଘର ସଂସାର କଲାଣି । ବେଳେ ବେଳେ ବୁଢ଼ାକୁ ଦେଖି-ଭେଟି ଯାଏ । ପୁଅ ଯାଇଚି ବର୍ମା । ଗତ ମହାଯୁଦ୍ଧ ବେଳେ ଜାପାନ ବର୍ମା ଆକ୍ରମଣ କଲାରୁ ଆମ ଲୋକ ସବୁ ଭାଗି ପଳେଇ ଆସିଥିଲେ । ବର୍ମା ଡାକୁ ହାତରେ କାହାର ପ୍ରାଣ ଯାଇଚି, କିଏ ବାଟ କଢ଼ରେ ମରିଚି, କିଏ ବା ଦରମରା ଅବସ୍ଥାରେ ଘରେ ଆସି ପହଞ୍ଚିଚି । କିନ୍ତୁ କକାର ପୁଅ ଆଉ ଫେରିନି । କିଏ କହେ, ବର୍ମୀ ସ୍ତ୍ରୀ ଧରି ସେ କେଉଁ ପଲ୍ଲୀ ଗାଁରେ ଘର କରିଚି । କିଏ ଅବା କହେ, ରେଙ୍ଗୁନ୍‌ରେ ପ୍ରଥମ ବୋମା ପଡ଼ିବା ଦିନ ଯେଉଁ ଲୁଟି, କଟା କଟି ହେଲା ସେଥିରେ ସେ ମରିଚି । କିନ୍ତୁ କକା କେବେ ହେଲେ ପୁଅ କଥା ଉଠେଇବା ମୁଁ ଶୁଣିନି । ତେବେ, ହସ ହସ ମୁହଁ ତଳେ, ମୁକ୍ତ ପ୍ରାଣର କେଉଁ ନିରଭିବ୍ୟକ୍ତ ତନ୍ତ୍ରୀ ଭିତରେ, ପୁତ୍ରହୀନତାର ଗୋପନ ବେଦନା ଅବା ନିର୍ଲିପ୍ତ ସାନ୍ତ୍ୱନା ଜମାଟ ହୋଇ ଯାଇ ଥିବା ହୁଏତ ଅସାଧାରଣ ନୁହେଁ; କାରଣ କୌଣସି ପ୍ରସଙ୍ଗରେ କକା ଥରେ ମନ୍ତବ୍ୟ କରିବା ମୋର ମନେ ଅଛି—

Digitized by srujanika@gmail.com

"ବାପ, ଜନ୍ମ ମାଟିରୁ ଯିଏ ଉପୁଡ଼ି ଯାଏ, ମଶାଣି ମାଟି କେବଳ ତା'ର ଗନ୍ତ ହୁଏ । ମାଆର ପଣତ ତଳୁ ଛଡ଼େଇ ନେଲେ ପିଲା ଉଜୁଡ଼ି ଯାଉନ, କି ମଣିଷ ହୁଏନ ।"

( ୪ )

ସେ ଦିନ ଗାଁରେ ଗୋଟାଏ ବଡ଼ ରକମର ହଇଚଇ ହୋଇ ଗଲା । ସବୁ ଦିନ ପରି ଦି'ପହର ବେଳେ ଆଖଡ଼ା ଘରେ ଦଳେ ଝିଅଣ୍ଡିଆ ଆଠ ଘଇଞ୍ଚ ( ଏକ ରକମ କଉଡ଼ିର ଖେଳ ) ପାଲି ଲଗେଇ ଥିଲେ । ଖେଳ ଖୁବ୍ ଜମିଥିଲା । ଖେଳାଳିଙ୍କ ଅପେକ୍ଷା ଉଭୟ ପକ୍ଷର ସମର୍ଥକ ଓ ଦେଖାଳିଙ୍କ ଆଗ୍ରହ, ଉଦ୍‌ବେଗ, ଉତ୍ତେଜନା ବିଶେଷ ଜଣା ପଡ଼ୁଥିଲା । ପାଟି-ତୁଣ୍ଡ, ହସ-ଗମାତରେ ଘରର ଛାତ ଉଡିଯିବା ପରି ବୋଧ ହେଉଥିଲା । ଖେଳ ଆରମ୍ଭରୁ ମଦନର 'ଯୋଡ଼'କୁ କଇବଲର ଯୋଡ଼ ଗୋଡ଼େଇଚି । ଠିକ୍ ପାଚିବା ମୁହଁରେ ମଦନର ଯୋଡ଼ ମଲା । କଇବଲର ଦଳକୁ ଆଉ ସମ୍ଭାଳେ କିଏ ! ସିଁସି ବଜେଇ, ତାଳି ମାରି, ଗାମୁଛା ଉଡ଼େଇ ବିଜୟ ଉଲ୍ଲାସ ପ୍ରକାଶ କଲେ । ଯିଏ ଯାହାର ବିଲ-ବାଡ଼ିକୁ ଯିବେ ଏଥର, ଖେଳ ଭାଙ୍ଗି ଆସିବା ବେଳ ହେଲାଣି । ଯୋଡ଼ ଜିଆଁଇ ପଚେଇବା ଆଉ ମଦନର ସାଧ୍ୟ ନୁହେ । ଦାନ ବାନ୍ଧିବାରେ ହଡ଼ପ କଲା ବୋଲି ମଦନର ଦଳ ଆପତ୍ତି ଉଠେଇଲେ । ଟାପରା ଟିକଲରୁ ଚଦାଚଦି, ଧରାଧରି ଚାଲିଲା । ସେଇ ଧୁ'ଧା, ଭିଡ଼ାଭିଡ଼ି ଭିତରେ ମଦନର ପଇତା ଛିଣ୍ଡିଗଲା । କାନ୍ଦି କାନ୍ଦି ମଦନ ଘରକୁ ଗଲା ।

ଏ ଭଳି ଘଟଣା ଆଠ ଘଇଞ୍ଚ ଖେଳରେ କିଛି ନୂଆ ନୁହେ । ତେବେ, ସେ ଦିନର ଏ ଝିମିଟିରୁ ବାହାରିବ ବୋଲି ମହାଭାରତ

Digitized by srujanika@gmail.com

ଯେପରି ଅନେକ ଦିନରୁ ପାଞ୍ଚୁଥିଲା । ମଦନ ବାପା ବରଜ ପାଣିଗ୍ରାହୀ ଗାଁର ଧନୀ, ମହାଜନ । ତାଙ୍କ ପୁଅ ଦେହରେ ହାତ ଦେବ, ଇମିତି ଲୋକ କ'ଣ ଗାଁରେ ଜନମ ହେଲାଣି ! ଘଣ୍ଡୀପୁଅ କଇବଲିଆର ଏତେ ଡହିଆ ! କାଠ ପଥର ଭଳି ଗାଁ ଲୋକ ଠିଆ ହେଇଚନ୍ତି, ପୁରୁଣ ମଣ୍ଡପ ଉପରେ ପାଣିଗ୍ରାହୀ କଇବଲିଆକୁ ବିବଧ ମାଡ଼ ମାଇଲେ । କଇବଲିଆର ନାକ ଭିତରୁ ରକତ ଗଡ଼ି ପାଟିରେ ଜାବ ଉଠିଲାଣି, ତଥାପି ପାଣିଗ୍ରାହୀଙ୍କ ରାଗ ଶାନ୍ତ ହେଇନ । ଏତିକି ବେଳେ ହେଲା ଭୋଳା କକାଙ୍କର ଆବିର୍ଭାବ । ଦରମରି କଇବଲିଆକୁ ତଳୁ ଗୋଟେଇ ଧରି ଆଜ୍ଞା କରି ପାଣିଗ୍ରାହୀଙ୍କୁ କେତେ ପଦ କସ ଶୁଣେଇ ଦେଲେ । ଦୁଇ ଜଣ ଭିତରେ ବଚନିକା ବି ଚାଲିଲା କିଛି ସମୟ । ଶେଷରେ, କଚେରୀରେ ଦେଖା ହେବ କହି ପାଣିଗ୍ରାହୀ ତମ୍ପ ସାପ ଭଳି ଫୁଲି ଫୁଲି ଘରକୁ ଫେରିଲେ । ଭୋଳା କକା କଇବଲିଆକୁ ତା'ର ଅନ୍ଧୁଣୀ ବିଧବା ମାଆ ପାଖକୁ ନେଇ ଦେଲେ । ଭୁଟୁଭାଟ ହେଇ ଗାଁ ଲୋକ ଭାଙ୍ଗି ଗଲେ ।

ଏଇ ଘଟଣା ଦିନ ମୁଁ ଥିଲିନି ଗାଁରେ । ପରଦିନ ଫେରି ସବୁ ଶୁଣିଲି । ଭୋଳା କକାଙ୍କ ସତ୍ ସାହସକୁ ଖୁବ୍ ପ୍ରଶଂସା କଲି ମନେ ମନେ । କିନ୍ତୁ ଆଶଂକା ବି ହେଲା, କାରଣ ଏ ଭଳି ଦାମ୍ଭିକତାକୁ ପାଣିଗ୍ରାହୀ ସହଜରେ ଭୁଲି ଯିବା ଲୋକ ନୁହନ୍ତି । ଉପର ବେଳା ପାହାଡ଼ ତଳ ବାଇଗଣ ପଦରରେ କକା ସଙ୍ଗେ ଦେଖା ହେଲା । କହିଲି,

"ତମେ ଇମିତିରେ କାହିଁକି ଚହ୍ଲା ପଡ଼ିଲ କକା ! ପାଣିଗ୍ରାହୀର କଳ ବଳ ତ ଜାଣିଚ । କୋଉ ଅମଡ଼ାରେ ନେଇ ଫେରେ ଭରତି କରିବ !"

Digitized by srujanika@gmail.com

ଜଜା ବାଇଗଣ ଚଳର ମାଟି ଖୋସୁ ଥିଲେ । ଖଣ୍ଡେଟା ଥୋଇ ଦେଇ ହାତ ଦୁଇଟାକୁ ଅଣ୍ଟ ଆଉଜା କରି ବସିଲେ । କପାଳର ଟୋପି ଟୋପି ଝାଳ ଭୂରୁ ଛେଦ ଡେଇଁ ବୁଢ଼ିଆ ଗାଲକୁ ଗଡ଼ି ଆସୁଥିଲା ।

“ମଣିଷର କଳ ବଳ ଫନ୍ଦ ସବୁ, ବାପ, ଦଇବ କାହିଁକି ଅଛୁରେ ! ମଣିଷର ବଢ଼ିଆ କେତେ କାଳ ? ଯିମିତି ବଢ଼ିବ ସିମିତି ଛୁଡ଼ିବ ।”

ମୋର ମନେ ହେଉଥିଲା, ଜଜା ଯେପରି ମନ୍ତ୍ର ପାଠ ଆବୃତ୍ତି କରି ଦୁନିଆର ଗତି ବୁଝିବାରେ ବେନପୂମ କରୁଚନ୍ତି । କହିଲି, “ଦଇବକୁ ତ ଆଜି କଟେଶ୍ୱ ସୀମାର ଦହଗଞ୍ଜ ଭୋଗିବାକୁ ପଡ଼ିବନି ।”

“ତୁ ଭୁଲ୍ କରୁଚୁ”, ସେ ବୁଝେଇବାକୁ ଚେଷ୍ଟା କଲେ, “ଦଇବ ସବୁ ଦେଖୁଚି, ସବୁ ଭୋଗୁଚି । ସେ ପରା ‘କରି କରାଉ ଥାଏ ମୁହିଁ !’ ପାଣିଗ୍ରାହୀ ମାରିବା, କଇବଲିଆ ଦରମର ହେବା, ପେଟ ଭିତରେ କୋହ ଚିପି ଗାଁ’ ଲୋକେ ଜଡ଼ା, କାଲି ଭଳି ଠିଆ ହେବା—ସବୁ ସେ ଦେଖିଚି । ସେଇଟା ହିଁ ଅସଲ ଦେଖା । କଟେଶ୍ୱ ଯାହା ଦେଖୁଚି ଦେଖୁ ।”

“କିନ୍ତୁ, କଟେଶ୍ୱର ଦେଖା ତୁମକୁ ମାନିବାକୁ ପଡ଼ିବ ।”

ସେ ସହଜ ହେଇ ବସିଲେ । ମୁଁ ବି ଗୋଟାଏ ପଥର ଉପରେ ବସି ଗଲି । ଜଜା ମୁହଁରେ ଗଭୀର ଆତ୍ମବିଶ୍ୱାସ ପ୍ରକାଶ ପାଉଥିଲା,

“ମାନି ନେବା ଓ ମନେ ନେବା ଭିତରେ ଅନ୍ତର ଅଛି ରେ ବାପୁ ! ମନେ ନେବା ଭିତରୁ ଜାତ ହୁଏ, ମାନି ନେବାଟା



Digitized by srujanika@gmail.com

ବାହାରର ଲୋକ । ପାଣିଗ୍ରାହୀ ମତେ ପୁଲସ ହାତରେ ବନ୍ଧେଇବ ତ, ହଉ; ସେ ଯଦି ସେତକ କରେ, ଗାଁ ଯାକର ଲୋକ ବନ୍ଧନରୁ ମୁକୁଳି ଯିବେ ।"

ଏକ ରକମ ହତାଶ ଭାବେ କହିଲି,

"ତମେ କ'ଣ ଭାବୁଚ କକା, ଏଇ ମୂର୍ଖଲୋକ କେବେ-ହେଲେ ମୁହଁ ଖୋଲି ପାରିବେ ? ମଣିଷ ଭଳି ବଞ୍ଚି ଜାଣିବେ ? ଏମାନଙ୍କ ଉପରେ ମୋର ମୋଟେ ଆସ୍ଥା ନାହିଁ ।"

କକାର ମୁହଁରେ ମ୍ଲାନ ହସ ଉକୁଟିଲା । ସ୍ୱରରେ ବେଦନାର ସ୍ପର୍ଶ ଲାଗିଲା ଭଳି ବୋଧ ହେଉଥିଲା ମଧ୍ୟ ।

"ତୁ ଏମାନଙ୍କ ପାଖରୁ ଦୂରେଇ ଯାଇଚୁ । ତୋ ମନରେ ବିଶ୍ୱାସ ଆସିବ କିମିତି ? ମୁଁ ଯେହେତୁ ଏମାନଙ୍କ ମେଳରେ ରହିଚି, ଜାଣେ ଏମାନେ କ'ଣ ।"

କକାର ମୁହଁକୁ ଚାହିଁ ରହିଲି । ସେଇ 'କ'ଣ' ପଦଟିର ବିଶ୍ଳେଷଣ ଶୁଣିବା ପୂର୍ବରୁ ମୁଁ ଯୁକ୍ତି ବଢ଼େଇ ପାରୁ ନଥିଲି ।

ସୂର୍ଯ୍ୟର ଝିଲି ମଣ୍ଡଳ ଯାଉଥିଲା । ଦୂରରେ କେଉଁ ଗାଈଆଳର ଲମ୍ବା ବଇଁଶୀରେ 'କଳା-ମାଣିକ' ଧ୍ୱନିତ ହେଉ-ଥିଲା । ଖଣ୍ଡିଲଟା ଗହଳ ଭିତରୁ କେଉଁ ଘର ବାଛୁରୀ ଗାଈର ଉଦ୍‌ବିଗ୍ନ ହମ୍ବାଳି ଶୁଭୁଥିଲା ରହି ରହି । ପଶୁ ଓ ମଣିଷ ଉଭୟ ପ୍ରାଣରେ ଯେପରି ଅଂଶକତ ମାତୃତ୍ୱ ଆକୁଳ ହୋଇ ଉଠିଚି ।

କକା କହିଲେ,

"ଏମାନେ ଗରିବ, ଅନାଥ । ପେଟ ପୂରେଇ ଅବା ରୁଚି କରି ଖାଇବା ହେଲେ ଜାଣନ୍ତିନି । ଉପରି ମଣିଷର ଲୋକ ସବୁ

Digitized by srujanika@gmail.com

ପ୍ରକାର ବାଧା ବିପଦକୁ କରମ କହି ମୁଣ୍ଡ ପୋତି ସହି ଯାଆନ୍ତି,—"

ମୁଁ ବାଧା ଦେଲି,

"କିନ୍ତୁ ଏହା ଧର୍ମଶୀଳତା ନୁହେଁ । ଏହା କୁସଂସ୍କାର, ମାନସିକ ବିକୃତି ।"

"ସତ; କିନ୍ତୁ ଏଥିରେ ଏମାନଙ୍କର ଦୋଷ କ'ଣ ? ଯୁଗ ଯୁଗ ଧରି ସବୁ ପ୍ରକାର ସୁବିଧା ଓ ସୁଯୋଗରୁ ଛଡ଼ା ଖାଇ ଏଇ ଲୋକେ ଏକ ରକମ ଗମାର ପାଲଟି ଯାଇଚନ୍ତି । ଧର୍ମ, ଜାତିଆଣ, ନ୍ୟାୟ, ଶାସନ—ସବୁ ବାଟପୁରେ ଉପର ଲୋକେ ଏମାନଙ୍କୁ ଲୁଟି କରିଚନ୍ତି, ଠକିଚନ୍ତି । କେଉଁ ବଳରେ ଏମାନେ ମୁହଁ ଖୋଲନ୍ତେ ? ମଣିଷ ଭଳି ବଞ୍ଚି ଜାଣନ୍ତେ କମିତି ? ଏମାନେ ମୁହଁ ଖୋଲିବେ କେବଳ ସ୍ନେହ ପାଇଲେ । କଣ୍ଠରେ ଆକୁଳତା ଭରି ଠିକ୍ ଏଇ ଗାଈଟି ଭଳି ଏମାନଙ୍କୁ ସ୍ନେହ ଦେଇ ଡାକିବାକୁ ହେବ; ଆପଣାର କରିବାକୁ ହେବ ।"

ସନ୍ଧ୍ୟା ନଇଁ ଆସିଥିଲା । ଏକାଠି ଘରକୁ ଫେରିଲୁ । ମନ ମୋର ଭାରି ହୋଇ ଯାଇଥିଲା । ଜଇବଳିଆ ଲାଗି ପାଣିଗ୍ରାହୀର ସାମନା କରିବା ପଛରେ କଳା ପ୍ରାଣର ଆବେଗ ମୁଁ ସମ୍ୟକ୍ ବୁଝି ପାରିଥିଲି । ତଥାପି ନାନା ରକମର ପ୍ରଶ୍ନ ଉଠୁଥିଲା ମନରେ । କଳା କ'ଣ ସ୍ନେହ ଦେଇ ଏଇ ଲୋକଙ୍କ ମୁହଁରେ ସତରେ କଥା ଫୁଟେଇ ପାରିବେ ?

( ୫ )

ପାଣିଗ୍ରାହୀ ବହୁତ ଉପାୟ କଲେ । ଧମକ ଦେଲେ, ପଇସା ଲୋଭ ଦେଖେଇଲେ, ତଥାପି ଖେଳ କଳା ବିରୁଦ୍ଧରେ କହିବା

Digitized by srujanika@gmail.com

ଲାଗି ଗାଁ'ରେ ଜଣେ ହେଲେ କଏ ସ୍ଵଜ ହେଲେନ । ଅଗତ୍ୟା ପାଣିଗ୍ରାହିଙ୍କୁ ଉଠେଇବା ହାତ ନିଜ ଗାଲରେ ବସେଇ ଚୂନ ପିବାକୁ ହେଲା । ଘରୁ ଘରୁ ପୁରୁଣା ଗୁଡ଼ଲ, ଜାଇ, ଘିଅ, ଆମ୍ବୁଲ, ଚନ୍ଦ୍ରପଚିବା ମାଗି ଆଣି କକା ପଥ୍ୟ ପାଚନରେ କଇବଲଆଙ୍କୁ ସୁସ୍ଥ କରି ଦେଲେ । ଆଖଡ଼ା ଘରେ ପୂର୍ବପରି ଖେଳ ଚାଲିଲା । ଗାଁ'ର କିଶୋର ସଂସାର ନିର୍ଦୋଷ ଆମୋଦ, ଆନନ୍ଦରେ ପୁଣି ସହଜ, ସରସ ହୋଇ ଉଠିଲା । ଏଇ ଜୀବନରୁ ବଞ୍ଚିତ ହେଲା କେବଳ ମଦନ । ଆଖଡ଼ା ଘରକୁ ଆସିବା ଲାଗି ତା'ର ମୁହଁ ନଥିଲା ।

ଅଭିନନ୍ଦନ କରି ଧନେ କହିଲି,

"ମୋର ବିଶ୍ୱାସ ନଥିଲା, କକା, ଗାଁ' ଲୋକ ଇମିତି ଏକ ମନ ହେବେ ବୋଲି । ବାସ୍ତବିକ୍ ତମେ ଏମାନଙ୍କ ଭିତରେ ବଳ ଆଣି ଦେଇଚ ।"

କକା ହସି ହସି ଉତ୍ତର କଲେ,

"ଏହା କିଛି ପଶୁବଳ ନୁହେ । ସ୍ନେହ ଓ ବିବେକର ଦାବି ମାତ୍ର । ପଇସାକୁ ଯିଏ ବଡ଼ କରି ଜାଣିଚ, ପଇସା ଲାଗି ସେ ସବୁ କରି ଦେଇ ପାରେ । ମାନ, ମହତ, ଜ୍ଞାନ ତାର ରହେନି । କିନ୍ତୁ ଏ ଲୋକେ ପଇସାର ମୋହରେ ପଡ଼ି ନାହାନ୍ତି । କାରଣ ତିର ଦରିଦ୍ରତା ଏମାନଙ୍କୁ ସବୁବେଳେ ପଇସାର ସଂସାରରୁ ଦୂରରେ ରଖିଚ ।"

ମୁଁ ସନ୍ଦେହ ଭୁଟେଇବାକୁ ଗୁହିଁଲି,

"ଏମାନେ ସବୁ ଧନେ ପଇସାର ସଂସାରରୁ ଦୂରରେ ରହିବା କ'ଣ ତମେ ପସନ୍ଦ କରୁଚ ?"

Digitized by srujanika@gmail.com

"ନା, ପଇସା ଦିନେ ଏମାନଙ୍କ ପାଖରେ ଶରଣ ପଶିବ । ସେ ଦିନ ପାଇଁ ଏମାନଙ୍କୁ ପ୍ରସ୍ତୁତ କରି ରଖିବାକୁ ହେବ ।"

ମୁଁ ବୁଝି ପାରି ନଥିଲି । ପଚାରିଲି,

"ବ୍ୟବସାୟ, ବାଣିଜ, କଳ କାରଖାନା, ଜମିଦାରୀ ସବୁ ତ ରହିଚି ଉପର ଲୋକଙ୍କ ହାତରେ । ପଇସା ଏମାନଙ୍କ ହାତକୁ ଆସିବ କିମିତି ?"

କକା କହିଲେ,

"ଆଜିର ପଇସା ଅର୍ଥ କେବଳ ଧନ ନୁହେଁ; ଧର୍ମ, ନ୍ୟାୟ, ଜ୍ଞାନ, ଶାସନ ମଧ୍ୟ । ଏ ସବୁ ପଇସାର—,"

ସେ ଗୋଟିଏ ଅର୍ଥ-ପ୍ରକାଶକ ପଦ ପାଇଁ ଖୋଜ ହେଲେ ।

ମୁଁ ବଢ଼େଇ ଦେଲି,

"ପଇସାର ବିନିମୟ ମାଧ୍ୟମ ।"

ସେ ଆନନ୍ଦିତ ହେଲେ,

"ହଁ ପଇସା ଦେଇ ଯାହା ଅଦଳ ବଦଳ ହୁଏ । ପଇସାର ଏ ପ୍ରାଧାନ୍ୟ ରହିବନି ।"

ମୋର ବିଶ୍ୱାସ ବଳୁ ନଥିଲା । ପଚାରିଲି, 'କିମିତି ?' "ଆଜି ଯେଉଁମାନେ ପଇସାର ମୂଲ୍ୟ ନିରୂପଣ କରୁଚନ୍ତି, ପଇସାର ଗୁଡ଼ ଜାଣନ୍ତିନି । ପଇସା ଗୋଟାଏ ଅନାବଶ୍ୟକ ସୃଷ୍ଟି; ମାତ୍ର କେତେଟା ଲୋକଙ୍କୁ ଗୋଟାଏ ବଜାର ସଡ଼କ । ଉପଜ ସଙ୍ଗେ ଏହାର ସହଜ ସମ୍ପର୍କ ନାହିଁ । ବଜାରର ଅନିଶ୍ଚିତ ଗତି ଦିନେ ଏ ସଡ଼କକୁ ଅଚଳ କରି ଦେବ । ତା'ସଙ୍ଗେ ଅଚଳ ହୋଇ ଯିବ ଏ ସଡ଼କର ସଂସାର ।"

Digitized by srujanika@gmail.com

ବୃଦ୍ଧି ପାଉଲା, କକା ପୁଞ୍ଜିବାଦୀ ବିଶ୍ୱରେ ଆର୍ଥିକ ସଙ୍କଟ ସଙ୍ଗେ ଶାସନ ବ୍ୟବସ୍ଥା ଅଚଳ ହୋଇ ଯିବା ଗଣନା କରୁନ୍ତି । ମତେ ଆଶ୍ଚର୍ଯ୍ୟ ଲାଗୁଥିଲା, ଗାଁ'ର ଅଶିକ୍ଷିତ ଏ ବୃଦ୍ଧ ଏ ଯୁଗର ଅର୍ଥନୀତିର ଜଟିଳ, ଅସାର ତତ୍ତ୍ୱ ବୁଝି ପାରୁଚନ୍ତି କିମିତି ? ହୁଏତ ଏହା ପଛରେ ଥିଲା ସୃଜନୀ ଶକ୍ତିର ସହଜ ଅନ୍ତର୍ଜ୍ଞାନ । ସନ୍ତାନର ବିବିଧ କ୍ରିୟାନୁଷ୍ଠାନର ଅର୍ଥ ଜନନୀ ଯଦିଓ ସଂପୂର୍ଣ୍ଣ ହୃଦ୍‌ବୋଧ କରି ପାରେନା, ତଥାପି, ସନ୍ତାନ ଉପରେ ଏହାର ପରିଣତି କି ଭଳି ରୂପ ନେଇ ପାରେ, ତା'ର କଳ୍ପନାପ୍ରବଣ ମାତୃପ୍ରାଣ ଅବ୍ୟକ୍ତ ଭାବରେ ଅନୁଭବ କରି ପାରି ଥାଏ । କକା ବୁଝି ପାରି ଥିଲେ, ପୁଞ୍ଜି ଶାସନତନ୍ତ୍ର ଭାଙ୍ଗି ପଡ଼ିବା ଫଳରେ କ୍ଷମତା ଆସିଯିବ ଶ୍ରମଜୀବୀ ହାତକୁ । ପଚାରିଲି,

"ଲୋକେ କିଭଳି ପ୍ରସ୍ତୁତ ହେବେ ?"

କକା ଉତ୍ତର କଲେ,

"ଲୋକଙ୍କ ମନରେ ବିଶ୍ୱାସ ଆଣିବାକୁ ହେବ । ସେ ବିଶ୍ୱାସ ଆଣି ହେବ ସେମାନଙ୍କ ସଙ୍ଗେ ନିଜକୁ ଏକ କରି ଦେବାରେ; ସେମାନଙ୍କ ସୁଖ, ଦୁଃଖରେ ଭାଗୀ ହେବାରେ; ଗଭୀର ସ୍ନେହ ଓ ସମ୍ମାନ ଅର୍ପଣ କରିବାରେ । ତମ ବର୍ଗର ଲୋକ, ଯେଉଁମାନେ ଯୁଗ ଯୁଗ ଧରି ଏଇ ତଳିଆ ଲୋକଙ୍କୁ ଗରିବ କରିବାରେ ସାହାଯ୍ୟ କରି ନିଜେ କୌଣସି ସୁବିଧା ପାଇ ପାରି ନାହାନ୍ତି, ଏଣିକି ଏମାନଙ୍କ ସଙ୍ଗେ ମିଶି ଯିବାକୁ ହେବ । କାରଣ ଉପର ଲୋକ ତୁମକୁ ମଧ୍ୟ ଭଲରେ ରଖି ଦେବେନ ।"

ଏ ବୃଦ୍ଧର ଗଭୀର ଅନ୍ତର୍ଦୃଷ୍ଟି ମତେ ଅବାକ୍ କରି ଦେଇଥିଲା । ପୁଞ୍ଜି-ସମାଜରେ ନିମ୍ନ ମଧ୍ୟ ବର୍ଗ ଧୀରେ ଧୀରେ ଦେଉଳିଆ ହେବା ସେ ଜାଣି ପାରିଥିଲେ ।

Digitized by srujanika@gmail.com

( ୭ )

ମୋର ଦୃଷ୍ଟିଲାଭ ହୋଇଥିଲା । ମୁଁ ବୁଝି ପାରିଥିଲି, ମୋର ଭାଗ୍ୟ, ମୋର ଭବିଷ୍ୟତ ପଲ୍ଲୀ ଗାଁର ଏଇ ଜଡ଼ା କାମିଙ୍କ ସଙ୍ଗେ; ନଗରୀର ବେଙ୍କ୍ ଅବା କାରଖାନା ମାଲିକ ସଙ୍ଗେ ନୁହେଁ । ଉପର ବର୍ଗର ଅନ୍ୟାୟ, ଅବିଚାର ଓ ଶୋଷଣ ବିରୁଦ୍ଧରେ ଭୋଲା କକାର ଏଇ ଲୋକଙ୍କ ସଙ୍ଗେ କାନ୍ଧ ମିଶେଇ ଠିଆ ହେବା ପାଇଁ ମୋର ଅନ୍ତର ଭିତରେ ଗୋଟାଏ ବାଣୀ କି ଏକ ନୂତନ ଶକ୍ତି ଜାତ କରୁଥିଲା । ମୁଁ ଯେତେ ଦୂରେଇ ଯାଉଥିଲି, ଫେରି ଆସିବା ଲାଗି ସେତେ ବ୍ୟାକୁଳ ହେଉଥିଲି ।

ଭୋଲା କକାର ମନରେ ଶିକ୍ଷାର ଅହମିକା ନଥିଲା, କିନ୍ତୁ ସତ୍ ଶିକ୍ଷାର ଶ୍ରେଷ୍ଠ ମହତ୍ତ୍ୱ, ଅନ୍ଧକାର ଭିତରେ ଆଲୋକର ସନ୍ଧାନ ନେବା, ସେ ଭଲ ଭାବେ ବୁଝିଥିଲେ । ଆଭିଜାତ୍ୟର ବାହ୍ୟାଡ଼ମ୍ବର ଭଳି ତାଙ୍କର ଲୋକପ୍ରିୟ ନାଁକୁ ମିଥ୍ୟା ସମ୍ମାନ ଦେବା ଲାଗି ଆଗ ଧାଡ଼ିରେ ବିଶ୍ୱବିଦ୍ୟାଳୟର ଶସ୍ତା ଉପାଧି ନଥିଲା, କିନ୍ତୁ, ସେ ନିଜେ ଥିଲେ ଗୋଟାଏ ଶିକ୍ଷାନୁଷ୍ଠାନ, ଯେଉଁ-ଥିରେ ମଣିଷର ଜୀବନଯାତ୍ରାକୁ ସରଳ, ସହଜ ଓ ସୁନ୍ଦର କରିବା ପାଇଁ ବିବିଧ ତତ୍ତ୍ୱ ଓ ସତ୍ୟ ଆବିଷ୍କୃତ ହେଉଥିଲା । ସେ ଅଷ୍ଟ-ବର୍ଗର ସାଧକ ନଥିଲେ; କିନ୍ତୁ ତାଙ୍କର ଧର୍ମ ଥିଲା ସ୍ନେହର ଧର୍ମ, ମୈତ୍ରୀର ଧର୍ମ । ଶିଶୁ ଭଳି ସରଳ ଓ ମାତୃହୃଦୟ ଭଳି ଉଦାର ସେ ଥିଲେ ମାନବତାର ପ୍ରତୀକ । ସେ ରାଜନୀତି ବୁଝି ନଥିଲେ, 'ବାଦ' ବୁଝି ନଥିଲେ; କିନ୍ତୁ ତାଙ୍କର ନୀତି ଥିଲା ମଣିଷକୁ ଦାସତ୍ୱରୁ ମୁକ୍ତ କରିବା । ଦୁଃଖେ ଗଢ଼ା ଜୀବନକୁ ଧରି କାନ୍ଦିକରି ସେ ଦାର୍ଶନିକ ହୋଇ ନଥିଲେ; ମଣିଷର ସୁଖ

Digitized by srujanika@gmail.com

ଦୁଃଖକୁ ଆପଣାର କରି ସେ ପାଇଥିଲେ ସତ୍ୟକାର ପ୍ରାଣର ଦର୍ଶନ, ଯେଉଁ ପ୍ରାଣ ସ୍ପନ୍ଦିତ ହେଉଚି କୋଟି ଶୋଷିତର ପଞ୍ଜରା ଭିତରେ ।

ସ୍ନେହଲତା ମଲେଣି କେତେ ବର୍ଷ ହେଲା; କିନ୍ତୁ ଗାଁର ଧନ, ଦୁଃଖୀ ଭିତରେ ସେ ବଞ୍ଚି ରହିବେ ଚିରଦିନ ପାଇଁ । ପାଣିଗ୍ରାହୀ ଏବେ ବି ବଞ୍ଚିଚି; କିନ୍ତୁ ସେ ମରିଚି ଚିରଦିନ ପାଇଁ । ତା'ର ମନଗଢ଼ା ଆଭିଜାତ୍ୟର ଦୁନିଆ ଖଣ୍ଡ ଖଣ୍ଡ ହୋଇ ଭୁଷୁଡ଼ି ପଡ଼ୁଚି ପ୍ରତିଦିନ ।

---

## ସୁନା

ସୁନା ମୁହଁକୁ ଦାନା ଗଲା ନାହିଁ ।

ହେମ ଏଠି ନାହିଁ । ହେମ କେଉଁଠିକି ଚାଲିଯାଇଚି । ଥିଲେ ସେ କି ଆସି ରହି ପାରନ୍ତା ? କିଏ ଆସନ୍ତା । ସୁନାର ଗଜ ଗଜ ଚିର ଫନେଇ ଉଠେ ଯେମିତି ! ଦେହ ଭିତରେ ଉଷୁମ ପାଣିର ସୁଅ ବହିଯାଏ । ପୁଣି ପବନ ଆସି ସବୁ ଶୀତଳେଇ ଦିଏ । ବାମ୍ଫ ଥଣ୍ଡା ହୋଇ ବୁନ୍ଦ ବୁନ୍ଦ ହୋଇ ଝାଳ କଢ଼ୁଥାଏ । ଚିରରେ ରସ ନାହିଁ, ଶୁଖିଲା ।

ହେମ ଚାଲିଗଲା କେଉଁଠିକି—ମଣିଷ ଜାତି, ଯିବା ଆସିବା ଲାଗିଚି, ଗଲା—ପୁଣି ଆସିବ—ସେଥିପାଇଁ ତା'ର ଦୁଃଖ ନାହିଁ; ହେମ ଗଲା—ଏଇଠି, ଏଇବାଟେ, ତା'ର ଆଗରେ, ତାକୁ ଟିକିଏ ଚାହିଁଲା ବି ନାହିଁ, ତା ବେକରେ ଆସି କଅଁଳ କଅଁଳ ହାତ

Digitized by srujanika@gmail.com

ଯୋଡ଼କ ବେଡ଼ି ଧରି, ତା ଥୋମଣି ପାଖରେ ତା ଦୁଗୁଳା ବେଣୀର ଅଳବଳ ଅମାନିଆଁ ବାଳ କେଉଁଠାରେ ଗାରକଟା ଗାଲଟାକୁ ଆଣି ଥରେ ଘଷିଦେଇ ଗଲା ନାହିଁ ? ମଣିଷ ଜାତି ପରି !

ସକାଳୁ ଉଠି ସୁନା ଗୃହେଁ । ହେମ ଦଉଡ଼ି ଆସି ତା ଉପରେ ଲଦି ପଡ଼େ । ତାର କନ୍ଥା-ଉଷୁମ ଦେହର ଉଷମାଳିଆ ଗନ୍ଧ ସାଙ୍ଗରେ ନିଆଁ ବଡ଼ ସେକା ସୁନା ଦେହର ଧୂଆଁଗନ୍ଧିଆ ଗନ୍ଧ ମିଶି ଯାଏ । ପଶୁ ଆଉ ମଣିଷ ପାଖ ପାଖ ହୋଇଯାନ୍ତି । ପଶୁ ତାର ପ୍ରବୃତ୍ତି ପଦାକୁ ଛୁଟିଦେଇ ଦଉଡ଼ ଯାଏ—ମଣିଷ ତାର ବସ୍ତିର ଗୁମସ୍ତିଘରୁ ବାହାରି ଆସେ—ଦୁହିଙ୍କର ଭେଟ ହୁଏ ।

ହେମ ଅଧୂଆ ମୁହଁରେ ଆସି ସୁନାର ନେଞ୍ଜାଳ ଲଗା ଅସନା ମୁହଁକୁ ଗୃହେଁ । ଆଖିର ତଳ ଗୃହାଣୀ କରୁଣ ହୋଇ ଉଠନ୍ତି । ହେମର ଆଖି ଦୁଇଟି ଅଳସ ଛୁଟେ । ସୁନାର ଆଖି ଦିଇଟାରୁ ବାମ୍ଫ ଉଠୁଥାଏ । ହେମ ମନେ ମନେ ଭାବେ—ସୁନା ମୋତେ ଭଲ ପାଏ, ସୁନା ମନେ ମନେ ଭାବେ—ହେମ ଯଦି ମୋର ଛୁଆ ହୋଇ ଥାନ୍ତା !

ଦୁଇଦିନ ହେଲା ହେମ ଆଉ ଆସି ନାହିଁ । ଏଣ୍ଡ ଦାଣ୍ଡ ବାଟେ କାହା ପଛେ ପଛେ ସେ ନାଲି କପ୍ତା ଖଣ୍ଡେ ପିନ୍ଧି ଦଉଡ଼ି ଦଉଡ଼ି ଚଲା ସେଦିନ—ଦୁଇ ଦିନ ହେଲାଣି, ଆଉ ଫେରି ନାହିଁ । ସୁନା ଅନେଇଛି ସେଇ ବାଟକୁ । ଅନେଇଥାଏ ଦିନଯାକ । ହେମ ଫେରେ ନାହିଁ—ହେମ ଫେରୁ ନାହିଁ—ହେମ ଫେରି ନାହିଁ ।

ହେମ ଯେଉଁ ଦିନ ସକାଳୁ, ସକାଳୁ ସକାଳୁ ଚାଲିଗଲା, ସେଦିନ ସୁନାର କୁଣ୍ଡାପିଟା ଖିଆ ବେଳ ଆସିଲାରୁ ଅଥୟ ହୋଇ ପଡ଼ିଲା ।



Digitized by srujanika@gmail.com

ନିତ ସକାଳୁ, ସୂର୍ଯ୍ୟ ଯେତେବେଳେ ଝାଉଁଶିଆ ବାଉଁଶ ପତରର ଥରଥର ଦେହରେ ଚକମିକ ଚକମିକ ମାରୁଥାଏ, ସେତେବେଳେ ହେମ ବାଁହାତରୁ ଖଣ୍ଡେ ଖଣ୍ଡିଆ କୁଣ୍ଡାପିଠା କାମୁଡ଼ ଡାହାଣ ହାତରେ ତାର ତଳଠେ ହେବ ଧରି ଦଉଡ଼ ଆସି ସୁନା ମୁହଁ ପାଖରେ ଧରେ । ସୁନା ଥରେ ଦିଥର ଜିଭ ବୁଲେଇ ଦେଇ ତା ପରେ ପାଟିକି ନିଏ । ହେମର ହାତ ନାଲି ହୋଇଯାଏ, 'ଧେତ୍—ଧେତ୍—' କହି ହେମ ସୁନାର ଗଜାଶିଙ୍ଗ ଦୁଇଟିର ମଝି ହାଡ଼ୁଆ ଜାଗାରେ, କି ତା ନରମ ମାଉଁସର କହ୍ଣୀ ତଳକୁ ଦୁଇଥର କଚୁଡ଼ ଦେଇ ପଳାଏ । ଦୁଆର ମୁହଁରୁ ବୁଲପଡ଼ ହାତ ଉଞ୍ଚାଇ କହେ—ଫେର୍ ଯିବ ଦେଖିବୁ କଉ ଦିନ ! ସେ ହାତ ଧୋଇ ପୁଣି ଆସି ଠିଆ ହୁଏ । ତା'ର ଖାଇବା ସରି ନଥାଏ । ସୁନା ମୁହଁ ବୁଲାଏ । ହେମ ତା ମୁହଁରେ ଚୁପୁଡ଼ା ମାରେ । ଆଉ ଖଣ୍ଡେ ଛିଣ୍ଡାଇ ତଳେ ପକାଇ ଦିଏ । ସୁନା ଖାଏ । ହେମ ଆଉଁସି ଦିଏ । ଦଣ୍ଡକ ଆଗର ରାଗ ମୁଣ୍ଡରୁ ଗୋଡ଼ତଳକୁ ଓହ୍ଲେଇ ଆସି, ଦୁବଘାସର ନୁଆଁଣିଆଁ ମଥା ଉପରେ ମରିଯାଏ ।

ତହିଁଆର ଦିନ ସକାଳୁ ପୁଣି ହେମ ଆସେ । ନିତ ନିତ । କିନ୍ତୁ ଆଜି ହେମ ଆସିଲା ନାହିଁ । ସୁନାକୁ ଚରିବା ପାଇଁ ଯେତେ-ବେଳେ ବେକରୁ ପଘା ଖୋଲି ଦେଲେ, ସେ ପଦାକୁ ନଯାଇ ସିଧା ଚାଲିଲା ସଡ଼କେ ସଡ଼କେ । ବାଟରେ କାହା ବାଡ଼ ଉପରେ ଖଣ୍ଡେ ନାଲି ଲୁଗା ଶୁଖୁଥିଲା । ସୁନା ଗୋଡ଼ ଦି'ଟାକୁ ଟେକି, ଲାଙ୍ଗୁଡ଼ ଉଠାଇ, ପୁଣି ପଛକୁ ଫେରି ପଡ଼ିଲା । ପୁଣି ଆଗକୁ ଧୁରି ଚାହିଁଲା । ଲୁଗାଟା ହଲୁ ନାହିଁ । ମନରେ ହେଲା—ହେମ ତ ଏଇ ରଙ୍ଗ ଲୁଗା ପିନ୍ଧି ଯାଇଥିଲା । ସେ ସାହସ ବାନ୍ଧି ଲୁଗା ପାଖକୁ ଗଲା । ଲୁଗାକୁ ଶୁଙ୍ଘିଲା । କସ୍ତା ଲୁଗାର ମୁଣ୍ଡ ଗନ୍ଧ ଧୋଇ ଯାଇଛି । କା' ଦେହର

Digitized by srujanika@gmail.com

ଝାଳ ବାଳ ଆଉ ଗୋଟାଏ ଗନ୍ଧ, ତେଲର ଶକଟା ସାଙ୍ଗରେ ଗୋଳ ହୋଇ, ମରି ଗଲାଣି ସେଠି । ହେମ ଦେହର ଦୁଧିଆ ଗନ୍ଧ ଲୁହେଁ ଏ । ତଥାପି ସୁନାର ମନ ବୁଝିଲା ନାହିଁ । ଘନ ବାଡ଼ରେ ଅକସ୍ମାତ୍ କେଉଁଠି କେମିତି ଫାଙ୍କ ରହି ଯାଇଥିଲେ, ତା'ର ଭିତରେ ମୁହଁ ଗଳେଇ ଗୁହିଁବାକୁ ଚେଷ୍ଟା କଲା । କାହିଁ, ହେମ ନାହିଁ ତ । ସେ ଛୋଟ ଫାଙ୍କକୁ ବଡ଼ କଲା । ସାରା ବେକଟା ଗଳାଇ ଗୁଲିଗଲା । ତଥାପି ହେମର ପତ୍ତା ନାହିଁ । ତା'କୁ ଦଶିଲା, ତାଙ୍କ ବାଡ଼ ପୋଇ ଶାଗ ପରି, ଏଠି ବ ଖେଳାଖେଳ ହୋଇ, ଖୁବ୍ ବହଳରେ ନାଲି ନାଲି ପୋଇ ଲଟା ମଞ୍ଚାରେ ମାଡ଼ିଯାଇଛି—କାହା ଗୃଳ ଉପର ଯାଏ । ଏଇମିତିଆ ମଞ୍ଚା । ତା'ର ମୂଳରେ ସଫା ଅଗ୍ରକରେ ହେମ ବସି ତପା (ଖୁଣ୍ଟକଳ) ଖେଳୁଥାଏ । ସୁନା ବେଳେ ବେଳେ ତା ପାଖରେ ଯାଇ ଘାସ ଚରେ । କଅଁଳ ପୋଇ ପତରକୁ ସେ ଗୃହେଁ ବ ନାହିଁ । ଆଜ ସେଠି ହେମ ନାହିଁ । ତା'ର କମିତିଆ ଭ୍ରଗ ହେଲା ମନରେ । ସେ ଭ୍ରଗ ଭିତରେ ଗୋଟିଏ ଭୋକ ବ ଥିଲା—ହେମକୁ ଦେଖିବାର ଭୋକ । ସେ କଣ୍ଟା ବାଡ଼ରେ ଘଷିହୋଇ ସାରା ଦେହକୁ ଛେଲକୁଲ ବାଡ଼ ଭିତରକୁ ପଶିଗଲା । ହେମକୁ ପାଇଲା ନାହିଁ । ନିରାଶ ହୋଇ ପଡ଼ିଲା । ସେ ପୋଇ ପାଖକୁ ଯାଇ ଶୁଙ୍ଘିଲା । ହେମର ନିଶ୍ୱାସ ସେଠି ବାଜୁଛି କ ନାହିଁ, ବାରି ପାରିଲା ନାହିଁ । ସେ ଜଉ ବୁଲାଇଲା । ତାକୁ ଭଲ ଲାଗିଲା । ଭୋକଟା ବା ଏଇଥିରେ ମରିଯିବ !

ଏତିକିରେ ଘର ଭିତରୁ, 'ଖାଇଗଲା, ଖାଇଗଲା' ବୋଲି କହି, କିଏ ଖଣ୍ଡେ ଏତେ ମୋଟ ପାଞ୍ଚଣ ଧରି ଧାଇଁ ଆସିଲା । ସୁନା ଲାଙ୍ଗୁଡ଼ ଟେକ ଦଉଡ଼ ପଳେଇବାକୁ ଲାଗିଲା । କେଉଁବାଟେ ଆସି-ଥିଲା, ବାଟ ଭୁଲିଗଲା । ବାଡ଼ କଡ଼େ କଡ଼େ ସେ ଅତରଛରେ

Digitized by srujanika@gmail.com

ଧାଇଁଲା । ଭସ୍ମରେ ହଗି ପକେଇଲା । ଯେଉଁଠି ଟିକିଏ ଫାଙ୍କ ଦେଖିଲା, ସେଠି ମୁହଁ ଗଳେଇ ବାହାରି ଯିବାକୁ ବସିଲା । ପଛରେ ତେଣେ ମଣିଷଟା ଗୋଡ଼େଇ ଥାଏ । ତେଲ ଉପରେ ତେଲ ବରଷୁଥାଏ । କେଉଁଠି ପଶିଯିବାକୁ ଡର ବି ହେଉ ନଥାଏ । ସବୁ ଫାଙ୍କଗୁଡ଼ାକ ଦୂରକୁ ତା'ର ମେଲା ବାଟ ଭଳି ଦିଶନ୍ତି । ପାଖକୁ ଗଲାକ୍ଷଣି ସେ ସବୁ ଏଡ଼େ ଅଣଓସାରିଆ ହେଇଯାଆନ୍ତି ଯେ, ଆଉ ପଶିବାକୁ ସାହସ ହୁଏ ନାହିଁ । ଏଥିରେ ସେ ମଣିଷଟା ଖୁବ୍ ପାଖରେ ହେଇଗଲା । ହମ୍ବାରଢ଼ ଗ୍ରୁଡ଼ ସୁନା ଗଁ ଗଁ ହୋଇ ଠାଏ ପଶିଯାଇଥିଲା । ମୁହଁ ଗଳେଇ ଦେଇଛି । କଣ୍ଠାରେ ଆଞ୍ଜୁଡ଼ି ହୋଇଗଲାଣି ଦାହଯାକ । ଆଉ ଯାଇ ପାରୁ ନାହିଁ କି ବାହାରି ଆସି ପାରୁ ନାହିଁ । ପଛଆଡ଼ୁ ପାହାର ଉପରେ ପାହାର ବସିଲା । ସୁନା ବକଳରେ ଡାକିଲା— ହେମ, ହେମ ! ହଁ ସେ ଡାକ ହେମ ଛଡ଼ା ଆଉ କେହି ବୁଝି ପାରିବ ନାହିଁ । କିନ୍ତୁ ହେମ ସେଠି ନଥିଲା ।

ତାକୁ ବାନ୍ଧିଦେଇ କାଞ୍ଜିଆହଡା ଆଡ଼କୁ ନେଇଗଲେ । କାଞ୍ଜିଆହଡା ନାଁରେ ତା କଲିଜା ଥରିଉଠିଲା । କାଞ୍ଜିଆହଡା ସେ ଥରେ ମାଡ଼ିଥିଲା ତା ଜୀବନରେ । ଗୃହିଦିନ କାଳ ଖୋଲରେ ମେଲରେ ପଡ଼ି ପଡ଼ି ସେ ଶୁଖି ଯାଇଥିଲା । ଗଣ୍ଡାଏ ଘାସ ବି ତା ପାଖରେ କେହି ପକାନ୍ତି ନାହିଁ, ମୁନ୍ଦେ ପାଣି ବି କେହି ପିଇବାକୁ ଦିଅନ୍ତି ନାହିଁ । ତା ଗୋଡ଼ ଯେତେବେଳେ ତା ଧଡ଼ାଟାକୁ ଟେକି ଧରିବାକୁ ନାରାଜ ହେଲା ସେ ପେଟ ଉପରେ ପଡ଼ି, ଆକାଶର ନେଳିକ ଶୂନ୍ୟ ଅଖିରେ ଗୃହିଁଲା । ତା' କଥା କେହି ଶୁଣିଲେ ନାହିଁ । ଗୃରିଦିନ ପରେ ତା ମାଲିକ ଖୋଜି ଖୋଜି ଆସି ପହଞ୍ଚିଲା । ତାର ମନେ ଅଛି, ସେତେବେଳେ କେଡ଼େ ଖୁସି ହେଇଯାଇଥିଲା । ଦଣ୍ଡିକ ଆଗରୁ ତାଙ୍କର ଭିତରୁ ଜଣକୁ କାଞ୍ଜିଆହଡାବାଲା ନିଲାମ କରିଦେଲା ।

Digitized by srujanika@gmail.com

ଜଣେ ପଠାଣ ନାଲ ନାଲ ଆଖି କର ତାକୁ ଘୋସାର ନେଇଗଲା । ସମସ୍ତେ କହିଲେ ହଡ଼ା ଗୋରୁଟା ଆଜ ଫୁଅନ୍ତା କ'ଣ ? କେହି କେହି ଦୁଃଖ କଲେ—ହେଲେ ବ କଂସେଇ ହାତରେ ଦେଲନା ! କାଞ୍ଜିଆହଉାବାଲା କହିଲା—ମୋର କ ଦୋଷ ? ସରକାରୀ ଗୋରୁ ନଲାମ ହେଲା, ଯା'ର ବେଶୀ ଡାକ ତାର ରହିଲା । ତେମେ ଏତେ ଲୋକ ଥିଲ, କେହି ବଡ଼ି, ନେଲ ନାହିଁ ? ସମସ୍ତେ ମୁହଁ ଫେରେଇ ଚାଲିଗଲେ । କାହାର ଦୋଷ ହେଲା ନାହିଁ । କାଞ୍ଜିଆ-ହଉାର ପଶୁଙ୍କ ଭିତରେ କେତେ ଆଲୋଚନା ଚାଲିଲା । ସମସ୍ତେ କହିଲେ ବଡ଼ ଭଲ ବଳଦଟିଏ ଥିଲା । ଆଜ ଗୋଟିଏ ବଳଦ ତାକୁ ଖାଲ ଝୁରହେଲା । ସୁନା ଗୋଟିପଣ ଥରୁଥାଏ । ତା ପାଇଁ ନୁହେଁ, ନଜ କଥା ଭାବ । ତାର ବ ଦନ ଆସୁଛି । ଓଃ କେଡ଼େ ଭୟଙ୍କର ! ସତେ କ'ଣ ସେ କଂସେଇ ହାତରେ ଜବେ ହବ ? ଜଣେ ବୁଢ଼ା ପୁରୁଖା ଗୋରୁ ତାଙ୍କ ଭିତରୁ ବାହାର କହିଲା—'ସେ ମରବ ନାହିଁ ଯେ ତରଯିବ । ଆମ ଏ ବଳଦ ଅଚ୍ଛତସ ଜୀବନରୁ ଛାଡ଼ି ପାଇଯିବ ।' ସମସ୍ତେ କହିଲେ 'ସତ ଏକା ।' ସୁନାର ମନ ମାନିଲା ନାହିଁ । ଖାଲ ପେଟରେ ବ ସୁନା ଆକାଶକୁ ଅନେଇ ଭାବେ, ସେ ଯଦ ଉଡ଼ପାରନ୍ତା ତେବେ ସେଇ ଦୂର କଅଁଳ ଘାସ, ହେଇଟି ଯେ ନେଳ ନେଳ ଦଶୁଛି ଦୂରରେ ଅଛି ବୋଲି, ସେ ନଶ୍ଚେ ଯାଇ ଖାଇ ଆସନ୍ତା । ଦୁଃଖ କଷ୍ଟସହା ଜୀବନ ଉପରେ ତା'ର ଭାର ମୁଆଁସ । ଦୁଃଖ କଷ୍ଟକୁ ଏଡ଼ିବା ପାଇଁ ସେ ମରିବାକୁ ମୋଟେ ରୁହୁଁ ନଥିଲା । ତା କଅଁଳ ସୁନେଲ ରୋମ ମୂଳ କେତେ ବିପଦ ମାଡ଼କୁ ଡ଼ାକ ଆଣୁଥିଲା । କନ୍ତୁ ବଦଳରେ ସେ ଦୁନଆକୁ ମାଗୁଥିଲା—ମୋତେ ଆହୁର ସୁନା ହେବାକୁ ଦଅ—ମୋତେ ଏଇମିତ ସୁନା ହୋଇ ରହିବାକୁ ଦଅ ।

Digitized by srujanika@gmail.com

ସେ ଭାବଥିଲା ତା' ମୁନିବ ଆସି ତାକୁ ଆଉଁସି ଦେବ, ତାକୁ ଖାଇବାକୁ ଦେବ । ସେ ସେଥିପାଇଁ ଉଲ୍ଲାସରେ ନାଚି ନାଚି ବୁଲିଲା । କିନ୍ତୁ ତା'ର ମନ ଭାଙ୍ଗିପଡ଼ିଲା । ତା ଖାମିନ୍ଦ ତା ଆହାରେ ସାହା ନହେଇ ସେହି ଭୋକିଲା ପେଟରେ ବାଡ଼େଇ ପକେଇଲା । ସେଇ ଦିନ ସେ ପ୍ରଥମେ ଜାଣିଲା ଯେ, ଦୁନିଆରେ ତା'ର କେହି ନାହିଁ ।

କାନ୍ଦି କାନ୍ଦି ସେ ଘରକୁ ଫେରିଥିଲା । ସେଦିନ ତା'ର ମା ତା' ମନେ ପଡ଼ିଲା । ଆଜି ଯଦି ମା ପାଖରେ ସେ ଥାଆନ୍ତା, କିଛି ନ କରୁ ପଛେ, କୋଳରେ ଟାଣି ତା ଆଖିର ଲୁହଟିକ ତ ପୋଛି ପକେଇଥାନ୍ତା ! ଯେଉଁ ଦିନ ତା ପାଖରୁ ତାକୁ ଛଡ଼େଇ ଆଣିଲେ ସେଦିନ ସେ ରଡ଼ି ଛାଡ଼ି କାନ୍ଦିଥିଲା । କେତେ ଦୂର ଯାଏ ତା' ମା' ତାକୁ ଚାହିଁଥିଲା । ସେଇ ଖୁଣ୍ଟରେ ସେ ଆଜି ବି ବନ୍ଧା ହେଇଥିବ । କିନ୍ତୁ ଆଜି ଆଉ ତାକୁ ଦେଖି ପାରୁ ନାହିଁ । ତା ଆଖିରୁ ଅନ୍ତର ହେଲା ପରେ ସେ ମା' ମା' ବୋଲି ସେଦିନ ଚିହାଡ଼ି ଛାଡ଼ିଲା । ତା ମା' ତାର ଜବାବ ବି ଦେଲା । କିନ୍ତୁ ଆଜି ଆଉ ତା ଡାକ ତା ପାଖକୁ ଯିବ ନାହିଁ । ଆଜି ଆଉ ଡାକ ଛାଡ଼ିବା ବୟସ ବି ତା'ର ନାହିଁ । ତା'ର ବୟସ ବି ଆଜି ତାର ବିରୁଦ୍ଧରେ । ମାନେ—ସେ ନିଜେ ବି ଆଜି ତା'ର ନୁହେଁ । ସମସ୍ତେ ପର ।

ସେଇ ଦିନ ସେ ଦୁଃଖ ଭିତରେ ହଜିଲା ନିଧି ପାଇଲା ପରି ସେ ପାଇଥିଲା ହେମକୁ । ତା ବାପା ଯେତେବେଳେ ତାକୁ ଖୁଣ୍ଟିରେ ବାନ୍ଧି ଦେଇ ଚାଲିଗଲେ, ସେ ତେଣୁ ଦଉଡ଼ି ଦଉଡ଼ି ଆସି ତାକୁ କୁଣ୍ଢାଇ ପକେଇ କହିଲା—ମୋ ସୁନା ଲୋ !

ତା ଦିହରୁ ସେ ଯେମିତି ଏତେ ଦିନର ବଥାଗୁଡ଼ାକୁ ପୋଛି ପକେଇଲା । ତା ବାପା ଅଣି କୁଣ୍ଡା ତୋରାଣି ଦେଲେ । ହେମ

Digitized by srujanika@gmail.com

ଆଉଁସି ଦେଉଥିଲା । ହେମର ଆଉଁସାରେ ଯେମିତ ତା ଜଭର ଅନ୍ଧ୍ରୁତ ଗ୍ରଡ଼ଗଲା । ସେ ଆସ୍ତେ ଆସ୍ତେ ସବୁ ଖାଇ ଦେଇ ଆଦ୍ରର ଗୃହିଁଲା । କନ୍ତୁ ଆଜ ତାକୁ କେହି କଛୁ ଦେଲେ ନାହିଁ । ସେ ଭୋକରେ ନାକସନ୍ଧ ଗୃଚିଲା । ହେମ ଭତରେ ଯେମିତ କଏ ଦେବତା ବଜେ କରଥିଲା । ସେ ଘରକୁ ଦଉଡ଼ ଯାଇ ଗୋଟେ ଭଙ୍ଗା କୁଲରେ ଗୃଉଳ ଖୁଦ କଛୁ ଆଣି ଦେଲା । ସେଥିପାଇଁ ସେ ଯେତେ ଗାଳ ଖାଇଛୁ—ଯେତେ ମାଡ଼ ଖାଇଛୁ । ବେଶୀ ସେଥିପାଇଁ ସେ ହେମର ହେଇଗଲା । ହେମ ବାପା ତାକୁ ଯେତେ ମାରେ, ସେ କେଉଁ ଦନୁ ତାଙ୍କ ଘର ଗ୍ଗଡ଼ ପଳାନ୍ତାଣି—କନ୍ତୁ ଖାଲ ହେମ ପାଇଁ ସେ ସବୁ ସହିଯାଏ । ହେମର ମା' ହେମକୁ ଯେତେ ମାରନ୍ତ, ସୁନାର ମନେହୁଏ, ସେ ବ ପଘା ଛୁଡ଼େଇ କେଉଁଠିକ ପଳାଇ ଯାଆନ୍ତାଣି, ଖାଲ ହେମ ପାଇଁ ସେ ଏ ଘରେ ରହିଛୁ ।

ହେମର ସୁଖ ଦୁଃଖର ସାଥୀ ସେଇ ସୁନା । ହେମ ନତ ମାଡ଼ ଖାଏ, ନତ ଗାଳ ଶୁଣେ । ନତ ସେ କାନ୍ଦ କାନ୍ଦ ଆଖିରେ ଆସି ସୁନା ପିଠିରେ ଆଉଜ ପଡ଼େ । ତା'ର ଉଷୂମ ବେକମୂଳରୁ ସୁନାର ପ୍ରେମ ଯେମିତ କେତେ ଦୁଃଖ ଶୋଷି ନେଇଯାଏ । ସୁନା ବ ମୁହଁ ବୁଲେଇ ହେମର ଜଙ୍ଘ ପାଖରେ ନେସିହୁଏ । ଏଇଥିରେ ଦୁହେଁ ଦୁହିଙ୍କର କଥା ବୁଝାବୁଝି ହୁଅନ୍ତ ।

ଆଜ ଆଉ ହେମ ନାହିଁ ତା କଥା ଶୁଣିବାକୁ । ସେ ଯମପୁର କାଞ୍ଜିଆହଡା ଭତରେ । ଆଜ ହୁଏ ତ ସେ ପଡସଡ଼ି ମରଯିବ—କେହି ପଗ୍ଭରବେ ନାହିଁ । ତା ଗ୍ଭତ ଥର ଉଠିଲା । ସେ ବାଟ ଗ୍ଗଡ଼ ଅବାଟରେ ପଳେଇବାକୁ ଚେଷ୍ଟା କଲା । କନ୍ତୁ ଦଉଡ଼ ଛୁଡ଼ିଲା ନାହିଁ କ ସେ ଲୋକର ମୁଠା ହୁଗୁଳାଲ ନାହିଁ । ଘର ଠାଣ । ନସତକୁ ପାଞ୍ଚଣ ବୋଲ ମାନ ସିଧାସଳଖ ଗ୍ଭଲଲା । ଏତକରେ

Digitized by srujanika@gmail.com

ହେମର ବାପା ଆସି ପହଞ୍ଚିଗଲେ । ସୁନା ତାଙ୍କୁ ଦେଖି ଉଡ଼ି ପୁଡ଼ିଲା । ହେମର ବାପା ଏ କଂପେଇଟା ସାଙ୍ଗରେ ବହୁତ କଜିଆ କରି ସୁନାକୁ ତାଠୁଁ ଛଡ଼େଇ ନେଇଗଲେ । ତା ପରଠୁ ସୁନାର ସ୍ୱାଧୀନତା ଚାଲିଯାଇଛି । ଦିନବେଳେ ବି ଦାଣ୍ଡରେ ଖୁଣ୍ଟିଟାଏ ପୋତି ତାକୁ ଖଟେଇ ପକେଇଛନ୍ତି । ସେ ସାରା ଦିନ ସେଇମିତି ସେଇଠି ଖୁଣ୍ଟିକି ମଝିକରି ମୁଣ୍ଡ ଲା କାଟୁଥାଏ । ସେଇ ନଣ୍ଡା ଅଣ୍ଡା ଘାସକୁ ଅକାରଣରେ ବାରମ୍ବାର ଚୁଟି ଚୁଟି ବିରକ୍ତ ହେଇ ସେ ବାଟ ଉପରକୁ ଚାହେଁ । ହେମ ଫେରେ ନାହିଁ ।

ଦି'ପହର ହେବାକୁ ବସେ । ସୂର୍ଯ୍ୟ ମଥା ଉପରକୁ ଉଠି ଆସି ଲେଉଟେଇ ଦେବା ପାଇଁ ସେ ପାଖକୁ ଝୁଙ୍କନ୍ତି । ସୁନାକୁ ଖରା କାଟେ, ଶୋଷ ଲାଗେ । ସଞ୍ଜ ହେବାକୁ ଆକୁଳ ହେଇ ଅନେଇ ଥାଏ ।

ହେମ ଥିଲେ ଇସ୍କୁଲ ଭିତରେ ଦୁଇ ଥର ମୁହଁମାରି ଦେଇ ଯାଆନ୍ତାଣି, ଭାତ ଖାଇ ଆସି କହି ଯାଆନ୍ତାଣି—"ଆଜ ଖାଲି ପିଆଜ ଲୁଣ ଲଗେଇ ପଖାଳ ଖାଇଲି । ବାପା ସାଙ୍ଗରେ ଖାଇବାକୁ ଡାକିଲା ନାହିଁ । ନୂଆ ମା ଏକୁଟିଆ ଚାମଡ଼ା ଶୁଖୁଆ ପୋଡ଼ି ଖାଇଲା । ମୋ ବେଳକୁ କିଛି ନାହିଁ । ମୋତେ ଗାଧେଇବାକୁ ପଠେଇ ଦେଇ, ସେ ଗେପା ମାରିଦେଲା । ହଁ ସତ, ମୋ ଧଣ ! ବିଲେଇ ପରି ଶୁଖୁଆ ମୁଣ୍ଡ କାଡ଼ୁମାଡ଼ୁ କରୁଥିଲା—ମୁଁ ଆଖିରେ ଦେଖିଛି ! ମୁଁ ସବୁ ଭାତ ଖାଇ ପାରିଲି ନାହିଁ । ମୋତେ ସାନ ମା ଆସି ଦି ଗାଲକୁ ଦି'ଖୁନ୍ଦା ପକେଇଲା । ମୋ ତାଳୁକୁ ଭାତ ଉଠିଗଲା । ମୁଁ କାଶିଲି । ତୁଣ୍ଡରୁ ଭାତ ଯାଇ ସାନ ମା ଉପରେ ପଡ଼ିଲା । ସେ ମୋତେ ଛେଚି ଦେଇଗଲା କଙ୍କାଳେ ।"

Digitized by srujanika@gmail.com

କହୁ ସେ କାନ୍ଦ ପକାନ୍ତା । ଏମିତି କେତେ ଦିନର କେତେ କାହାଣୀ ସେ କହୁଛି । ସୁନାର ଲୋକଲ ପେଟରେ ସେ ସବୁ ପଶି ଲୋକ ମାରି ଦେଇଛି । ହେମ ପାଇଁ ବି ସେମିତି । ହେମର ନିଜର ମା କେଉଁ ମଶାଣି ପାଉଁଶ ତଳେ ଶୋଇଛି । ମଶାଣିର ଧୂଆଁ ବାଦରେ ତା ନିଶ୍ୱାସ ଉଡ଼ି ଉଡ଼ି ଯାଇଛି । ସେ ହେମକୁ ଖୋଜି ପାଉ ନ ଥିବ । ଆଉ ସୁନା ?

ସୁନାର ମା କେଉଁଠି ମରି ମାଟି ଖତ ହୋଇ ଯିବଣି । ବଞ୍ଚିଥିଲେ ବି ଭୁଲି ଯିବଣି । ଆଉ ନୂଆ ନୂଆ ସୁନାଙ୍କୁ ନେଇ ସେ ହୁଏତ ବ୍ୟସ୍ତ ଥିବ ।

ସୁନା ଭାବେ, ଆଚ୍ଛା ମା'ର ମୁନିବ କ'ଣ ତାକୁ ମୋ'ରି ପରି ଏତେ କଷ୍ଟରେ ରଖିଥିବ ? କାହିଁକି ରଖିବ ? ସେ ତ ଆଉ ପର ନୁହେଁ ? ମୁଁ ଯିନା ଏଠି ପର, ସେଥିପାଇଁ 'ଦଶାବାଆ ପର ଘର ଗୋରୁ' କହି ମୁନିବ ମାଇପ ମୋତେ କେତେ ଚଳଉଛି ।

ସୁନା ଗୃହିଁ ବୟସ ଆତୁର ହୋଇ, ପୁଣି ସେ ତା' ମୁନିବ ଘରକୁ ଫେରି ଯିବ । ପୁଣି ଭାବେ ହେମକୁ ଛାଡ଼ି ଯିବ କିମିତି ? ହେମର ତ ଆଉ ନିଜ ଘର କେଉଁଠି ନାହିଁ । ହେମକୁ ତ ଆଉ କେହି ଅଧିଆଡ଼ି ଦେଇନାହିଁ । ଥିର କରେ, ନାଇଁ ସେ ଏଠି ରହିବ । ହେମ ଥିବା ଯାଏ ସେ ବି ଅଛି । ହେମକୁ ଛାଡ଼ି ସେ ସରଗକୁ ବି ଯିବ ନାହିଁ ।

କିନ୍ତୁ ହେମ ଯେ ତାକୁ ଛାଡ଼ି ଗ୍ଚଲିଗଲେ ! ତାକୁ ଟିକିଏ କହି ବି ଗଲ ନାହିଁ । ସୁନା'ର ଅଭିମାନ ହୁଏ । ସେ ତଳକୁ ମୁହଁ ପୋତି, ଥୋମଣିକୁ ଭଣ ଭଣ କରି, ମାଚ୍ଛି ଘଉଡ଼େଇବାର ବାହାନା କରେ ।



Digitized by srujanika@gmail.com

ଦେଖୁ ଦେଖୁ ମାସ ପରେ ମାସ ବିତିଗଲା । ହେମ ଆସିଲା ନାହିଁ । ଛତିଆଟା ଶୁଖି ଶୁଖି କଣ୍ଟା ହେଲାଣି । କେବେ ଫାଟିବ ଆଉ ? ମାଲିକ ମନରେ ଚିନ୍ତା ହେଲା । କେତେ ଦିନ ଆଉ ତାକୁ ପୋଷିବ ସେ ! କେତୁଟା ଟଙ୍କା ବା ମିଳିବ, ସେଥିପାଇଁ ଏତେ ମେହେନ୍ତ ! ସେ ସୁନାକୁ ଟିକିଏ ଭଲ ଖାଇବାକୁ ଦେଲା । ସୁନାକୁ କିନ୍ତୁ ରୁଚୁ ନ ଥାଏ ।

ହଠାତ୍ ଦିନେ ହେମ ମାମୁଁ ଘରୁ ଫେରି ଆସିଲା । ସୁନା ଚିହ୍ନି ପାରିଲା ନାହିଁ ଆଗ ।

ହେମ ବି ସୁନାକୁ ଚିହ୍ନିଁ ତାଟକା ହେଇଗଲା । 'ତୁ ମୋ ସୁନା, ନା ଲୋ ?' କହି ସୁନା ବେକକୁ ଯାଇ ବେଢ଼ି ଧରିଲା । ସୁନାକୁ ହେମର ଦେହଟା କମିତି ଅଲଗା ଅଲଗା ଲାଗିଲା । ମବ ଚରଡ଼ଆ ଦୁଧ ଭଳି ଗାଢ଼ ତରଳ ଦେହ ତା'ର ଟିକିଏ ବସିଲା ବସିଲା ହେଇ, ଭିନେ ରକମର କୋମଳ ହୋଇ ଯାଇଛି—ଯେମିତି ମାଖନ । ଖାଇବାକୁ ନ ପାଇ ତା' ଗୁଡ଼ିହାଡ଼ ଦିଶୁଥିଲା । ସେ ହାଡ଼ ବେଳେବେଳେ ସୁନା ଦେହକୁ କାଟେ । ଆଜି ତା' ଗୁଡ଼ିରେ ଯେମିତି ଲାଗିଗଲାଣି । ସେ ଦିନ ତା' ଦେହର ବାସଟା ଯେମିତି ତୁଳସୀ ଗଛ ପରି କେଉଁ ବାସନା ଗଛର ପତର ମଝିରୁ ବାହାରିଥିବା ନୂଆ କେନା ଦେହରୁ ଛୁଟି ଆସୁଥିଲା । ଆଜି ସେଇଠି, ସେଇ ଗଛରେ ଯେମିତି କଢ଼ି ବାହାରି ଆସିଲାଣି । ଫୁଟିବ ଫୁଟିବ ହେଉଛି । ବାସ ମହକ ଉଠିବ ହେଉଛି । ତା ହିହର ରଙ୍ଗ ବି ବଦଳି ଗଲାଣି । ଆଉ ଶେଷ ଦିଶୁ ନାହିଁ—କଅଁଳା ଦୁଧ ପରି ହଳଦିଆଟା ।

ସୁନା ଅଭିମାନ କଲା । ହେମ ତାକୁ ସାଲୁଲେଇ ସାଉଁଳେଇ ପକାଇଲା । ତା' ବେକର ଥୋଳ (କମଳ)କୁ ଆଉଁସି ଦେଲା ।

Digitized by srujanika@gmail.com

ସେଠି କୁତୁ କୁତୁ କରି ତାକୁ ହସେଇ ଦେଲା—କମିତି କଥା ନ କହିବ ଦେଖିବା !

ତଥାପି ସୁନା ଆଗପରି ହେମ ପାଖରେ ଗେହ୍ଲେଇ ହୋଇ ପାରିଲା ନାହିଁ । ଅଭିମାନ ନଥିଲା । ଅଭିମାନ ଭାସି ଯାଇଥିଲା । ତଥାପି ଆଜ କମିତି ଛଡ଼ା ଛଡ଼ା ଭାବ । ଛଡ଼ା ଛଡ଼ା ନୁହେଁ— କମିତି ଗୋଟାଏ ସଙ୍କୋଚ ଆସିଲା ।

ହେମ ପଚାରିଲା—'ତୋର ଆଜ ଏ କ ଢଙ୍ଗ ଲୋ ସୁନା ?'

ସୁନା ତା'ର ମାରବ ଭାଷାରେ କହିଲା—'କାଇଁ, କ ଢଙ୍ଗ ? ତୋ' ରଙ୍ଗ ବଦଳ ଗଲଣି ।'

ହେମ ପଚାରିଲା—'ମୋ ଆଖି ନା ତୋ ଆଖି ଲୋ ? ତୁ ମୋତେ ଚହ୍ନିପାରୁ ନାହୁଁକ ? ଅଚହ୍ନା କରୁଛୁ ?'

ସୁନା କହେ—'ତୁ ଆଜର ମୋତେ ଆଗ ପରି କୁଣ୍ଢେଇ ଧରୁନୁ—ଲଦ ହୋଇ ପଡ଼ୁନୁ ? ତୋର ଏ କ ଢଙ୍ଗ ?'

ଦୁଇ ଦନ ଭିତରେ ହେମ ଶୁଣିଲା—ସୁନା ପାଗିଛି ।

ଦୁଇ ଦନ ଭିତରେ ସୁନା ଶୁଣିଲା—ହେମ ପୁଆଣୀ ଘର ନେଇ ଯିବ ।

ହେମର ବାର ଘରକୁ ଖବର ଗଲା । ସୁନା ଫଳ ଦେଲା । ହେମ ଏବେ ବ ସୁନା ପାଖକୁ ଆସେ । ମା ମନା କରିଛି—ଗାଈକ ଅଇଣ୍ଠା ଦଏ ନାହିଁ ହେମ । କନ୍ତୁ ସଞ୍ଜ ହେଲେ କୁଣ୍ଡା ତୋରାଣି ଆଣି ଦଏ । ସୁନା ଥରକୁ ଥର ନନ୍ଦା ଭିତରେ ମୁହଁ ଭରି ସଡ଼ଁର ସଡ଼ଁର କରି ଖାଇଯାଏ । ପୁଣି ମୁହଁ ଟେକ ଫଁ ଫଁ ସଁ ସଁ ହୋଇ

Digitized by srujanika@gmail.com

ଥକ ନେବା ବେଳକୁ, ହେମ କହୁଣୀ ଯାଏ ହାତ ବୁଡ଼େଇ କୁଣ୍ଡା ଗୋଳେଇ ଦଏ । ସୁନାକୁ ଆହୁରି ମିଠା ଲଗିଲା ପରି ଖାଏ ।

ଏଇମିତି ଦୁହେଁ ଦୁହିଙ୍କର ସକାଳ ସଞ୍ଜର ସାଥୀ । ହେମ ସୁନାର ଚରିଗଲା ବାଟ ପରି ଅତି ପରିଚିତ, ଅତି ଜଣାଶୁଣା ଆପଣାର । ସୁନା ହେମର ଅତି ହିଦହିଦିଆ, ପିତଳ ବଟଫଳ ପରି । ଚରିକୁ ଫେରୁ ଫେରୁ ସଞ୍ଜ ହୋଇଗଲେ, ସୁନା ଯଦି ବାଟବଣା ହେଇ ଆଉ କାହା ବାଡ଼ିରେ ପଶୁଥାଏ, ତେବେ ହେମ 'ସୁନା' ବୋଲି ପାଟି କରି ଦେଲେ, ଶବଦ ଶୁଣି ସେ ମଣିଷ ଭଳିଆ ଦଉଡ଼ି ଆସିବ ।

ସୁନାର ଛୁଆ ହେଲେ ତା' ନା ହେମ ରଖିବ—'ରୂପା' । କିନ୍ତୁ ଛୁଆ ହେବ ବୋଲି ସେ ଏତେ କଷ୍ଟ ପାଇବ ନା ? ସୁନାର କଷ୍ଟ ଦେଖି ହେମ ଖାଲି କାନ୍ଦିଲା । ତା ମା ତାକୁ ଯେତେ ଥେଣ୍ଡିଲା —"ମଲା ମ ! ଗାଈଟା ବେଇବ--ଇସ୍ପାର ନେମ୍ବୁରସ ଗଡ଼ଚଢ଼ିଛୁ--ଛଟକ ଦେଖ ।" ହେମର ଲୁହ ଆଉ ରୋକିଲା ନାହିଁ ।

ସୁନାରି ପରକୁ ସତ ରୂପା ଭଳି ପୁଅଟିଏ ହେଲା । ଅଣ୍ଡିରା ଛୁଆଟେ । ହେମ ଖୁସି ହେଇଗଲା । ହେମର ବାପା ମାଲିକ ଘରକୁ ଗଲା ଖବର ଦେବାକୁ ଛୁତ ଛଡ଼େଇ ଦେବ ବୋଲି । ହେମର ମଥା ଭିତରେ ଗରମ ପଶିଗଲା । ସେ କ'ଣ ଆଉ ସୁନାକୁ ଦେଖିବ ନାହିଁ ? ସୁନା ପାଖକୁ ସେ ବକଲ ହେଇ ଧାଇଁ ଯାଉଥିଲା—ଟିକଏ ଆଉଁସି ଦେବ—ଏତେ କଷ୍ଟ ପାଇଛୁ— । କିନ୍ତୁ ଏ କ'ଣ ? ଏଇ ସେଇ ସୁନାଟି । ଶିଙ୍ଗ ଦେଖେଇ ଗୋଡ଼େଇ ଆସିଲା । ହେମ ପଡ଼ିଗଲା ଚିତ୍ ହେଇ । ହେମର ମା ଯେତେ ଖୁଣ୍ଟା ଦେଲା—"ହେଇଚ ନା—ହେଇଚ ନା ? ଏଥର ସୁଆଗ ବାହାରି ଗଲା ଯେ—ଆଚ୍ଛା ହେଇଛୁ ।"

Digitized by srujanika@gmail.com

ହେମ ଆଉ କାନ୍ଦ ନାହିଁ । କିନ୍ତୁ କାନ୍ଦିବାଠାରୁ ବଳି ତାର ଦୁଃଖ—ତାର ସୁନା କୁଆଡ଼େ ହଜି ଯାଇଛି । ତା’ ସୁନା କୁଆଡ଼େ ପଳେଇ ଯାଇଚ ଯିମିତି ।

ସୁନାର ବି ବଡ଼ ଦୁଃଖ ହେଲା । ତା ଛୁଆଟା ଦୁଧ ଖାଇବାକୁ ଆସିଲା ବେଳକୁ ସେ ନାତ ମାରିଦେଲା ବୋଲି ।

ସୁନାକୁ ଯେତେବେଳେ ହେମର ବାପ ଦଉଡ଼ିରେ ବାନ୍ଧି ନେଇଗଲା, ସୁନା ସେତେବେଳେ ଚାରିଆଡ଼କୁ ଚାହିଁ ଖୋଜିଲା ହେମକୁ । ହେମ ତା’ ଆଗକୁ ଗଲା ନାହିଁ । ବାଡ଼ ପଛଆଡ଼େ ବସି କାନ୍ଦୁଥାଏ । ସୁନା ଖାଲି ଶିଙ୍ଗକୁ ହଲେଇ ଦେଇ କାହାକୁ ଯେମିତି କ’ଣ ମନା କଲା ।

କେଇଟା ଦିନ ପରେ ହେମର ଶଶୁର ଘରୁ ଲୋକ ଆସିଲେ । ହେମ ହଳଦିଆ ଲୁଗା ପିନ୍ଧି, ଦି’ ହାତରେ ହାତଠାରୁ ବେଶୀ ଓଜନର ବଡ଼ ବଡ଼ ଶଙ୍ଖା ମୁଠା ହାତକୁ ବୁଡ଼େଇ ପକେଇଛି । ଗୋଡ଼ରେ ପଘା ପରି ଖାଲି ପଘା ନୁହେଁ, ଝିଙ୍କିଆ ପରି ବି । ଯେଉଁଠି କି ଯିବ ସେ ଗୋଡ଼ରେ ବାଜିବ । ସମସ୍ତେ କହିବେ ସେ ଅମୁକ ଘର ବହୂ । ମୁଣ୍ଡରେ ସିନ୍ଦୂର ଗାର । ସିନ୍ଦୂର ଗାର ନୁହେଁ, ସେଟା ଗୋଟାଏ ନାଲି ବାଣୀ ଚିହ୍ନଟ । ସେ ଆଉ ହଜିବ ନାହିଁ ।

ଧାନକଟା ସରିଥାଏ । ଫଗୁଣ ମାସର ଆରମ୍ଭ, କି ମାଘ ଶେଷ ହେବ । ହିଡ଼େ ହିଡ଼େ ହେମ ଚାଲିଥାଏ । ଆଗରେ ପଛରେ ତା’ର ମଣିଷ । ବିଲ ମଝିରେ କି ଗୋଟେ ଗାଈ ତେଣୁ ଦଉଡ଼ି ଦଉଡ଼ି ଆସି ମଣିଷଙ୍କୁ ଚାହିଁଲା । ପୁଣି ଆଗକୁ ଦଉଡ଼ି ଗଲା । ରହିଯାଇ ପଛକୁ ଫେରି ଚାହିଁଲା । ମଣିଷ ସବୁ ତା ପାଖ ହେଲାଣି ସେ ଆଉ ଖଣ୍ଡେ ଆଗକୁ ଦଉଡ଼ି ଗଲା । ପୁଣି ସେଇମିତି ଆକୁଳ ଆଖିରେ ଚାହିଁଲା । ହେମ ଚାହିଁ ଦେଖିଲା ସୁନା । ମନ ହେଲା ଡାକଦେବ—

Digitized by srujanika@gmail.com

'ସୁନା !', କନ୍ଲୁ ଡର ମାଡ଼ିଲା—ଲାଜ ଲାଗିଲା । ଏତେବେଳକେ ସେ ବୁଝିଲା ସେ ବନ୍ଧା ହେଉଛି—ସେ ଶଶୁର ଘରକୁ ଘର କରି ଯାଉ ନାହିଁ । ତାର ଘର ବାନ୍ଧିବା କଥା ମିଛ । ସେ ଯାଉଛି ନିଜେ ବାନ୍ଧି ହେବାକୁ !

ଏତିକିରେ ପଛଆଡ଼ୁ ଜଣେ ମଣିଷ ଦଉଡ଼ି ଧରି ଧାଇଁ ଧାଇଁ ଆସିଲା । ସୁନା ଅଚିରଛରେ ଦଉଡ଼ିଲା । କିନ୍ତୁ ଏ ମଣିଷଟା ଖୁବ୍ ଜୁଆ ମଣିଷଟାଏ । ସୁନା ବଡ଼ କାଇଲା ହେଉଥିଲା । ଦଉଡ଼ ଦଉଡ଼ ହାଲିଆ ହୋଇ ଯାଇଥିଲା । ଧରା ପଡ଼ିଗଲା । ସେ ମଣିଷଟା ତାକୁ କଂସେଇ ଭଳି ଘୁଣ୍ଟ ପିଟି ପିଟିକା ଶିଙ୍ଘରେ ଦଉଡ଼ି ବାନ୍ଧି ଝିଙ୍କି ଝିଙ୍କି ନେଇଗଲା । ସୁନା ଗୋଟାଏ ବଡ଼ ଆତୁର ଚିତ୍କାର ଛାଡ଼ିଲା । ହେମ ପଛକୁ ବୁଲି ଦେଖିଲା, ସୁନା ଆଖିରୁ ଲୋତକ ବହି ଯାଉଛି ।

ହେମ ପୁଣି ତା' ବାଟରେ ଚାଲିଲା । ଶୁଖିଲା ଖୁଣ୍ଟା ଘାସଟେ ତା ଗୋଡ଼ରେ ଫୋଡ଼ି ହୋଇଗଲା । ସେ ଆଃ କରି ଉଠିଲା । ତା ଖୁଡ଼ୁଶାଶୁର ତାକୁ ଗାଳି ଦେଇ କହିଲା—ଅବାଟକୁ ଯାଉଚୁ କିଆଁ, ମଝିବାଟକୁ ଆ ।

ଦୁନିଆରେ ଯିଏ ଟାଣ, ନିର୍ମମ, ସେଇ ରହେ—ତାକୁ ସମସ୍ତେ ଡରନ୍ତି । ଯେ ଭଲପାଏ, ସେ କେବଳ ସହେ—ତାକୁ ସମସ୍ତେ ମାଡ଼ ଦଳି ଦେଇ ଯାଆନ୍ତି । ଯା'ର ହୃଦୟ ଅଛି, ବନ୍ଧନ ତା'ରି ।

ସୁନାର ହମ୍ବାରଡ଼ି ନିର୍ଦ୍ଦୟ ଆକାଶ ଦେହରେ ବାଜି ଛିନ୍ନ ହୋଇ କେଉଁଆଡ଼େ ଉଡ଼ି ଯାଉଥାଏ ।

ଆଗରେ ହେମର ଶଶୁର ଘର । ସେ ଗାଁ ପାରି ହେଲେ ଆଉ ଗାଁଟା ।



Digitized by srujanika@gmail.com

# ମଇଳା ଛବି

ଅନେକ ଦିନ ପରେ ଦେଖା । ସେହି ପରିଚିତ ମୁହଁ । ଅଳ୍ପ ପରିଚୟ ରଙ୍ଗରେ—ନୁହେଁ ସ୍ପଷ୍ଟ, ନୁହେଁ ଅସ୍ପଷ୍ଟ ହୋଇ ହଠାତ୍ ଭାସି ଉଠିଥିଲା—ସିନେମା ପରଦାର ଛବିପରି ମୁହଁରେ ହସ । ଶୁଖିଲା ମୁହଁକୁ ସେ ହସ ଘେନୁନାହିଁ । ଜରାଗ୍ରସ୍ତ ଓ୦ କନ୍ଥ ଦେଉଥିଲା ସେ ହସର ଯୌବନ ସାଙ୍ଗରେ ସମ୍ବନ୍ଧ ଅଛି । ସେଇଟା ଉଦ୍ଦାମ ତରଳତାର ତାରୁଣ୍ୟର ସ୍ନିଗ୍ଧତର ଗୋଟିଏ ରୂପ ।

ସୃଷ୍ଟିର ବିଡ଼ମ୍ବନା ହେଉଛି, ଯେତେବେଳେ ଦେହ ଉପରୁ ଝଲକ ଖସିଯାଏ, ଅବୟବମାନେ ସେମାନଙ୍କର ସହଜ ସୁଲଭ ଉତ୍ସାହ ହରାନ୍ତି, ସେତେବେଳେ ବି ଅଭ୍ୟାସ ଯୋଗୁଁ କଳଙ୍କି ଲୁଗା ଲୁହା ପରି ଯେଉଁ ଟିକକ ଦିଶିଯାଏ ସେତକ ହେଉଛି ସୃଷ୍ଟିର ଉପହାସ । ସେଥିରୁ ଗୋଟିଏ ହେଉଛି ଜରାଗ୍ରସ୍ତ ଲୋକର, ବିଗତ-ଯୌବନ ଲୋକର ହସିବାର ଚେଷ୍ଟା ।

ଆଖି ପରିଚୟ କରିପାରି ନାହିଁ । ବହୁତ ଦିନ ତଳେ ଦେଖି ମନ ଭିତରେ ଯେଉଁ ଟିକକ ସ୍ମୃତି ସମ୍ପାଦ ଥିଲା ସେତକ ପଡ଼ା ବହିର ପୃଷ୍ଠା ପରି ଖୋଜ ବାହାର କରିବାକୁ ଚେଷ୍ଟା କଲାବେଳେ ତାଙ୍କର ମୁହଁ ସ୍ପଷ୍ଟ ରୂପରେଖ ନେଇ ପାରି ନଥିଲା ।

କୋରଡ଼ଆ ଆଖି, ଠାକରା ଗାଲ, ବିବର୍ଣ୍ଣ ଓ୦ ଓ ବୟସ ମୁହଁରେ ସେ ପରିଚୟ ଦେଉଥିଲେ—ତାଙ୍କର କାମ ଅଛି ।

ଆପଣଙ୍କୁ ଖୋଜୁଥିଲି, ମୋତେ ଦାଶବାବୁ ପଠାଇ ଥିଲେ ।

Digitized by srujanika@gmail.com

ସତେ ? ସେ ତ ଆସିଛନ୍ତି କଟକ, କାଲି ତାଙ୍କ ସାଙ୍ଗରେ କଥା ହୋଇଥିଲି ଟେଲିଫୋନରେ ।

ହଁ, ଆଜ ଫେରି ଯାଇଥିବେ । ଯାଇ ପାରିଲି ନାହିଁ, ଦେଖା ହେଲା ନାହିଁ ।

କ'ଣ କହୁଥିଲେ ସେ ?

ମୋତେ ଗୋଟାଏ କିଛି କରିବାକୁ—ଏଇ ବ୍ୟବସାୟ, ସେ କହୁଥିଲେ ।

ବ୍ୟବସାୟ ! ହରିବାବୁ ଭାବିଲେ ବ୍ୟବସାୟ ଏହି ବାବୁ କରିବେ ! କଲିଯଠାକୁ ହାତ ବଢ଼ାଇଲେଣି । ଆଜ ଠିକକରେ ସୀମା ଛୁଇଁବେ । ତାଙ୍କର ଆଖି ଆଗରେ ସେହି ପୁରୁଣା ଛବି ଫୁଟିକି ଉଠିଲା, ଦାଶବାବୁଙ୍କର ବନ୍ଧୁ ! ସତେ ତ !

ବ୍ୟବସାୟ କରିବେ ? ଭଲ କଥା ।

କରିବାକୁ ଭାବି ନଥିଲି । ବସି ରହିଥିଲି । ଦାଶବାବୁ କହିଲେ, ଖାଲି ବସିବ କାହିଁକି, ଗୋଟାଏ କିଛି କାମରେ ଲାଗିଲେ ଭଲ ହେବ । ସମୟ କଟିବ । ଲାଭ ତ ନିଶ୍ଚୟ ହେବ । ସତେ, ଲାଭ ହେବ ନା ?

ଶୁଖିଲା ହସ ହସି ହରିବାବୁ କହିଲେ—ନ ହେବ କାହିଁକି ? ନିଶ୍ଚୟ ହେବ ।

ସେଇ କଥା ସେ କହୁଥିଲେ । ମୁଁ ତାଙ୍କୁ କହିଲି ଯେ ମୋର ତ ପୁଞ୍ଜି ନାହିଁ, କିମିତି କରିବ ? ସେ କହିଲେ,

ପୁଞ୍ଜି ? ପୁଞ୍ଜି କ'ଣ ହେବ ? ମୂଳଧନ ନଥିଲେ ଯାଏ ଆସେ ନାହିଁ । ଆମେ ତ ଅଛୁ । ହରିବାବୁଙ୍କ ପାଖକୁ ପଠାଇ ଦେଉଛୁ, ସେ ତୁମକୁ ସାହାଯ୍ୟ କରିବେ ।

Digitized by srujanika@gmail.com

କେଉଁ ପ୍ରକାର ବ୍ୟବସାୟ ? କେମିତି କରବେ ?

ମୁଁ କ'ଣ ଜାଣିଛି ? ସେହି ଦାଶ କହୁଥିଲେ ତ । ଆପଣ ଜାଣିଥିବେ ସେ ଆମର ବନ୍ଧୁ ।

ହଁ ଜାଣେ ।

ହେଲେ ସେ ଯେମିତି ହିସାବୀ କ ଚତୁର ଲୋକ ନୁହନ୍ତି । ଦେଖୁ ନାହାନ୍ତି ବୃକଣରେ ସେ କେତେ ପଛରେ ପଡ଼ି ଗଲେଣି ।

କାହିଁକ ? ସେ ତ ଉଠୁଛନ୍ତି ଉପରକୁ ।

ଉପରକୁ କ'ଣ ? ଭଲ ଉନ୍ନତି କର ପାରିଲେ ନାହିଁ । ସେ ତ କାହାର କଥା ଶୁଣିବେ ନାହିଁ, ଆଉ ଉନ୍ନତି କମିତି ହେବ ?

ହରବାବୁ ହସିଲେ । ଏଇ ତେବେ ପୁଣି ଗୋଟିଏ ନୂଆ ପରଚୟ, ଦାଶବାବୁଙ୍କ ବନ୍ଧୁଙ୍କ ମୁହଁରେ ଦାଶବାବୁଙ୍କର ପରଚୟ ।

ସେ ଉନ୍ନତି କର ନାହାନ୍ତି—ବ୍ୟବସାୟବୁଦ୍ଧିର ଅଭାବ ଯୋଗୁଁ । ତାଙ୍କର ସୁପାରଶ ଅ‌ସିଛି, ପଦ୍ମଲ ବାବୁଙ୍କୁ ବ୍ୟବସାୟରେ କୃକ-ନଗା କରିବା ପାଇଁ ।

ହଉ, ହେଲା ! ଆପଣ ବ୍ୟବସାୟ କରନ୍ତୁ । ପଦ୍ମଲ ବାବୁଙ୍କ ଓଠ ଥର ଉଠିଲା । ତେବେ ସବୁ ଠିକ୍ ହୋଇଛି । ରାସ୍ତାରେ ଯାଉ ଯାଉ ଦେଖା ହୋଇଗଲା ହରବାବୁଙ୍କ ସାଙ୍ଗରେ । ହରବାବୁ ରାଜ ହୋଇଗଲେ । ଆଉ ଅଭାବ କ'ଣ ? ନଜର ଭାବନାକୁ ଭାଷା ଦେଇ କହିଲେ—ତେବେ ମୁଁ ଘର ବୁଝୁଛି ।

Digitized by srujanika@gmail.com

ଲୋକ ଗହଳ ଜାଗାରେ ଏଇ ମାର୍ଗଶିର ମାସରେ ଆରମ୍ଭ କରି ଦେବ ।

ସବୁ ଭାବଚିନ୍ତା କରନ୍ତୁ ।

ଆଉ କ'ଣ ଭାବିବ ? ଏଇ ମୂଳଧନ ପାଇଁ ଯାହା ଝମେଲା ଥିଲା । ଦାଶବାବୁ ପରି କହୁଥିଲେ ଆପଣଙ୍କ କଥା । ହୋଇ ଗଲା ତ ।

ଆଚ୍ଛା ଦାଶବାବୁ ନିଜେ କିଛି ଖଟେଇବେ ?

ସେ କୁଆଡ଼ୁ ପାଇବେ । ନିଜେ ତ ଧାର ଉଧାର କରିଛନ୍ତି । ବାକି ରହୁଛି ।

ଆଉ ପରାମର୍ଶ ଦେଲେ ପରି ?

ହିଁ ତ । ଆପଣ ସିନା ଦେଇ ପାରିବେ । କେବେ ଆସିବ ? ଆଖି ଉପରେ ପୁଣି ଉତ୍ସାହ ଖେଳିଗଲା । ଶୁଖିଲା ପତ୍ର ପବନରେ ହଲିଲା ବେଳେ ଯେମିତି ନିଜକୁ ଥରାଏ, କିନ୍ତୁ ମନକୁ ଦୋହଲାଇ ପାରେ ନାହିଁ, ଠିକ୍ ସେମିତି ପହଲବାବୁ ଟିକକ ପାଇଁ ନିଜର ଶୁଖିଲା ମନକୁ ଚହଲାଇ ଦେଇଥିଲେ । ପୁଣି ପତ୍ର ଲଅଁ ଳୁଛି ।

ଆଶାର କ୍ଷୀଣ ରେଖା ।

ହଉ ଦେଖିବା । ମୁଁ କଥା ହେବ ଦାଶବାବୁଙ୍କ ସାଙ୍ଗରେ ।

କେବେ କଥା ହେବ ?

ହବ ତ ? ହଉ ନମସ୍କାର !

Digitized by srujanika@gmail.com

ଘର ଭଲ ହେଲା । ମୁଁ ଶୁଣି ବଡ଼ ଖୁସି ହେଲି । ଯାହା ହେଉ ଆମ ପଡ଼ାର ବାବୁଙ୍କର ଗୋଟିଏ କନ୍ୟା ହୋଇଗଲା । ସେ ଘର ଆଶୀର୍ବାଦ କରୁଛନ୍ତି ତୁମକୁ ।

ଆଶାସ୍ପୀ ଲୋକର ଆଶୀର୍ବାଦ ଫଳ ଫଳେ ନାହିଁ । ସେ ତ ଆଶା ମନରେ ରଖି କୃତଜ୍ଞତା ଜଣାଇଥିବେ । ତାକୁ ଆଶୀର୍ବାଦ ବୋଲି କଏ ଅବା କାହିଁକି ଭାବିବ ?

ତୁମର ତ ସବୁବେଳେ ସେହି କଥା । ଲୋକର ଉତ୍ସାହକୁ ଝୁଣିଦେଲେ ଭଗବାନ ଅଭିଶାପ ଦିଅନ୍ତି । ଜୀବହତ୍ୟା ଯେତିକି ଦୋଷ, ଜଣେ ଲୋକର ଉତ୍ସାହକୁ ମୂଳପୋଛ କରିଦେବା ତହିଁରୁ ଊଣା ନୁହେଁ ।

ଜଗନ୍ନାଥ ଲୋକର ଉତ୍ସାହ ସଂସାରର ଅପଚେଷ୍ଟା କହି ହସିବାକୁ ହସିଲେ । ଦାଶବାବୁଙ୍କୁ ସେହି ହସ ବିଦ୍ରୂପ ଭଳି ଲାଗିଲା ।

ତୁମର ଅଛି, ତୁମେ ରଖିଛ ବୋଲି ସିନା ଏମିତି ଅନ୍ୟର ଉତ୍ସାହ ଉପରେ ଶ୍ଲେଷ ବସେଇ ପାରୁଛ ?

କେଜାଣି । କଅଣ ଅଛି ସେତିକି କାହାକୁ ଅଛପା ନାହିଁ । ବାଳକ ଦୃଷ୍ଟ କରିବା ଯାହା, କଠିଣ ରୋଗଗ୍ରସ୍ତ ଲୋକର ଚିକିତ୍ସା କରିବା ବି ସେଆ । ଆଉ ପଡ଼ାର ବାବୁଙ୍କ ପରି ଲୋକ ପଛରେ କଳୁ ଲଗାଇବା କ'ଣ ଏକା କଥା ନୁହେଁ ?

ମୋର ଥିଲେ ମୁଁ ଦେଇଥାନ୍ତି ।

ଆଚ୍ଛା, ମୁଁ ଆପଣଙ୍କୁ ଦେବି । ଆପଣ ତାଙ୍କୁ ଦିଅନ୍ତୁ । ଦାୟିତ୍ୱ ଆପଣଙ୍କର ।

Digitized by srujanika@gmail.com

ନା, ନା, ସେ କଥା ହେବ ନାହିଁ । ମୁଁ ଅଧିକା ଦାୟିତ୍ୱ ନେଇ ପାରିବି ନାହିଁ । ମୋ ମୋଟ୍ ମତେ ବଳେଇ ପଡ଼ିଲାଣି ।

ହସି ହରିବାବୁ କହିଲେ—ଥାଉ, ଥାଉ, ମୁଁ ବୁଝିଲି । ମୁଁ ପଦ୍ମଲ ବାବୁଙ୍କୁ କହିଦେବି ।

ଦୁହେଁ ଦୁହିଙ୍କୁ ବୁଝିଥିଲେ । ଉପଦେଶ ଦେଇହୁଏ, ଦାୟିତ୍ୱ ନେଇ ହୁଏ ନାହିଁ । ଭାର ନେଇ ପାରିବା ଲୋକ ବୃଥା ଉତ୍ସାହ ବଏ ନାହିଁ ।

ପୁରୁଣା କଥା ସୁମରିଲା ପରି ଦାଶବାବୁ କହିଲେ—ଏଇ ପଦ୍ମଲ ବାବୁ ଦିନେ ଏତେ ବଡ଼ ଥିଲେ ଯେ ତାଙ୍କ ପାଖରେ ଭରସି ଛିଡ଼ା ହେବାକୁ ମନ ଶଙ୍କି ଯାଉଥିଲା । ଆଜି ସେ—

ହଁ ଥିଲା ବୋଲି ଖବର । ତେବେ ସେ ଗୁଡ଼ାକ ଗଲା କୁଆଡ଼େ ?

ନିଜ ଅଯୋଗ୍ୟପଣରୁ ହିଁ ।

ଅଜ ତେବେ ସେ କ'ଣ ଯୋଗ୍ୟ ହୋଇ ଗଲେଣି ? ଯେ ନିଜର ପିଲାଙ୍କୁ ପାଳିପାରି ନାହିଁ, ଯେ ନିଜର ଜନିଷକୁ ରଖି ପାରି ନାହିଁ, ସେ ଅନ୍ୟର ଜନିଷକୁ ନେଇ କ'ଣ କରିବ ?

ଯେ ଆଉ ଆଗ ପରି ନାହାନ୍ତି । ସଂସାରକୁ ବୁଝି ଗଲେଣି ।

ମନ ବଦଳିଛି ! ସ୍ୱଭାବ ବଦଳିଛି ?

ନା । ତେବେ ତାଙ୍କୁ ଦେଖିଲେ ମନରେ ଅନୁକମ୍ପା ଆସେ । ସାହାଯ୍ୟ କରିବାକୁ ଇଚ୍ଛା ହୁଏ । ତାଙ୍କ ବିଷୟରେ ଭାବିଲେ ମନଟା ଥରିଯାଏ ।

Digitized by srujanika@gmail.com

ସେଥିପାଇଁ ସେ କ'ଣ ବ୍ୟବସାୟ କରିବେ ? ସେ ନିଜେ ଚାକିରି କରିପାରିବେ ନା ଖଟିପାରିବେ ?

କେଜାଣି ! ଚେଷ୍ଟା କଲେ ନହେବ କାହିଁକି ? ଏତେ କଥା ନ ଭାବି ତାଙ୍କୁ ସାହାଯ୍ୟ କର ।

ହଁ । ନ ଭାବି ନ ବୁଝିକରି ଯେ ଯାହାକୁ ସାହାଯ୍ୟ କରିବାକୁ ଯାଇଛି ତାଙ୍କୁ ଦେଖି ତୁମେ ଆମେ ହସୁ । ଏବେ ବି ହସିବେ ।

ଡେରି ହେଲା । ସେ ତ ଦେଇ ନାହାନ୍ତି । ଖାଲି କହୁଛନ୍ତି ଯେ ମୁଁ ଦାଶ ବାବୁଙ୍କ ସାଙ୍ଗରେ କଥା ହୋଇଛି । କ'ଣ କହିଥିଲେ ସେ ? ମତେ ତ କିଛି କହୁନାହାନ୍ତି !

ଛାଡ଼ ଭାଇ । ତମର କ'ଣ ନଥିଲା ? ତୁମକୁ ନେଇ କିଏ କ'ଣ ନ କରିଛନ୍ତି ? ଆଜି କ'ଣ ଟିକିଏ ପାଇବାକୁ କେତେ ଚେଷ୍ଟା, କେତେ ଆଶୁ ଭଙ୍ଗି ଠିଆ ହେବା ?

ସବୁ କପାଳର ଦୋଷ । ସେଇ ତଳୁ ଉପରକୁ, ଉପରୁ ତଳକୁ ନେଇଯାଏ । ମୁଁ ପରା ସେଇଥିପାଇଁ ସେ ବ୍ୟବସାୟରେ ପଶିବାକୁ ଇଚ୍ଛୁ ନଥିଲି । ଆମର ସବୁ ବୁଡ଼ିଯାଇଛି ନା, ଆମକୁ ଆଉ କାହିଁକି କିଏ ପଚାରିବ ?

ଆଚ୍ଛା ଭାଇ, ତୁମେ କ'ଣ ଲାଗିଲେ କରିପାରିବ ନାହିଁ ?

ନ ହେବ କାହିଁକି ? ଏଇ ମଣିଷ ତ ସବୁ କରୁଛନ୍ତି । ଖାଲି ମୂଳଧନ ହେଉନାହିଁ ବୋଲି—

ବଡ଼ ଦୁଃଖର କଥା । ଏ ସଂସାର ବଡ଼ ନିଷ୍ଠୁର । ଥିଲା ଲୋକକୁ ସବୁ ଦିଏ । ନଥିଲା ଲୋକକୁ କିଛି ଦିଏ ନାହିଁ ।

Digitized by srujanika@gmail.com

ତଥି ସେ ନ ଦିଅନ୍ତୁ, ତୁମେ କିଛି ସାହାଯ୍ୟ ହୋଇ ପାରିବ ? ମୋତେ ସିନା ସେ ଦେବେ ନାହିଁ, ତୁମକୁ ତ ଦେବେ ?

ଦାଶ ବାବୁ ଚମକି ପଡ଼ିଲେ । ପହଲ ବାବୁ ତାଙ୍କ ଉପରେ ଆଖି ବୋଝ ଲଦିଲେଣି । ସେ ସିନା ବାଟ ଦେଖାଇ ଦେଇଥିଲେ । ବାଟ କଢ଼େଇ ନେବେ ବୋଲି କହି ନଥିଲେ । ଦୃଢ଼ ସ୍ୱରରେ କହିଲେ—ନା, ମୋ ଦେଇ ହେବ ନାହିଁ ।

ଅଳପରେ କରିବା । ଲାଭ ତମର ଅଧେ, ଆମର ଅଧେ ।

ଯେବେ କ୍ଷତି ହୁଏ ?

ହେଁ ସହିବା । ଦେଖାହେଲେ ତ ହରି ବାବୁଙ୍କୁ କହି ପାରିବା ଯେ ତାଙ୍କ ଯୋଗୁରୁ ଦୁନିଆ ଅଟକିଲା ନାହିଁ । ସେହି ଦିନ ଜାଣିବା ତାଙ୍କର ଓଜନ କେତେ ?

ନାହିଁ ଭାଇ, ସେ କଥା ହେବ ନାହିଁ । ତୁମେ କଣ ଆଉ ଖଟି ପାରିବ ? ତୁମେ ତ ଚଳି ଆସିଲ ଭଲରେ । ଏବେ ଦୁଃଖ କଷ୍ଟ ସହି ପାରିବ ନାହିଁ ।

ତୁମେ ହି ସେୟା କହିଲ !

ହରି ବାବୁଙ୍କ ପାଖରେ ନ୍ୟୂନ ହୋଇ ପହଲ ବାବୁ ଠିଆ ହୋଇଛନ୍ତି । ଆଖି ଉପରେ ଆଶଙ୍କାର ଦାଗ । ପ୍ରାର୍ଥୀର କାକୁତି ।

ସେ ଦିନ ହରି ବାବୁଙ୍କ ପାଖରେ ପହଲ ବାବୁଙ୍କର ଛବି ସ୍ପଷ୍ଟ । ସେ ଏବେ ପ୍ରାର୍ଥୀ । ପ୍ରଥମ ଥର ଦେଖାରେ ଯେଉଁ ଅଧିକାର ସେଇ ଆଖି ଯୋଡ଼କର ଭ୍ରୂଲତା ଉପରେ ଆଙ୍କି ହୋଇଥିଲା, ସେତକ ଲିଭିଯାଇଛି ।

ସେ ଆସିଛନ୍ତି ବନ୍ଧୁର ପାଇଁ, ତାଙ୍କର ସାମର୍ଥ୍ୟ ଓ ଉତ୍ସାହର ମାପ ଦେବାକୁ ।

Digitized by srujanika@gmail.com

ଆସିଥିଲି, କ'ଣ ଫେରିଯିବି ?

ମୁଁ କହିଥିଲି ଦାଶବାବୁଙ୍କୁ ଯେ ସେ ମାନି ଗଲେ ମୁଁ ଆପଣଙ୍କୁ ସାହାଯ୍ୟ କରି ପାରିବି ।

ବଡ଼ ଭଲ ହେଲା । ସେ ମାନି ଯିବେ । ସେ ମୋତେ ଏଥିରେ ଜୋର କରୁଛନ୍ତି ।

ସେ ତ ମନା କଲେ !

ମନା କଲେ ? କାହିଁ ମତେ କହି ନାହାନ୍ତି ତ ।

ସଙ୍କୋଚ କରି କହି ନଥିବେ । ଆପଣଙ୍କୁ ସାହାଯ୍ୟ କରିବାକୁ ତାଙ୍କର ଭୟ ହେଉଛି । ଏତିକି ଖାଲି କହିବାକୁ ସେ ସାହସ କରି ନଥିବେ ।

ପହଲି ବାବୁ କୋଠା ଘରର ଆଡ଼କୁ ଗୃହିଁଥିଲେ । ଉପରେ ମଣିଷର ଜନ୍ମ ମରଣର ଶେଷ ସୀମା ଦିଶୁଛି । ତାଙ୍କ ଉପରେ କାହାର ଆସ୍ଥା ନାହିଁ । ନା ସେ ଫେରିଯିବେ । ଯେ ନିଜ ଅଣ୍ଟାକୁ ଝାଡ଼ି ଝୁଡ଼ି ଦେଇଛି, ପାଇଥିବା ଜିନିଷ ବୁଣି ଦେଇଛି, ସେ ଆଜି ଅଧିକରେ କାହିଁକି ଆଶା ରଖିବ ?

ଯାଇଥିଲି, ହରିବାବୁ ଲେଉଟାଇ ଦେଲେ । ତମେ ମୋ ପାଇଁ ଜାମିନ୍ ହେବ ?

ନା । ନିଜେ କରିବ ତ କରିବ । ଜାମିନ୍ ହୋଇ ଲାଭ କ'ଣ ?

ତେବେ ତମର ବି ମୋ ଉପରେ ଅବିଶ୍ୱାସ ? ଏକଥା ଆଜଯାଏ ମୁଁ ଜାଣି ନଥିଲି । ଆଗରୁ ବୁଝିଥିଲେ ଘର କାମରେ ଲାଗିଥାନ୍ତି ।

Digitized by srujanika@gmail.com

ନାହିଁ, ନାହିଁ । ସାମର୍ଥ୍ୟ ନଥିଲେ, ଶକ୍ତି ନଥିଲେ ମଣିଷ ବିଶ୍ବାସ ହରାଏ । କିନ୍ତୁ ଅବିଶ୍ବାସ କରେ ନାହିଁ ।

ତମେ ଖାଲି ମତେ ଉପଦେଶ ଦେଉଥିଲ ? ଏବେ ପଚାରୁଛି କ'ଣ କରିବା ?

ଦାଶବାବୁ ଚାହିଁଥିଲେ ସେହି ଦିନକର ରଜାପୁଅ ପଦ୍ମଲ ବାବୁଙ୍କ ମୁହଁକୁ । ସବୁ ଥିଲା ବେଳର ପଦ୍ମଲ ବାବୁ ଏବେ କିଛି ନଥାଇ ଖାଲି ହାତରେ, ଶୁଖିଲା ମୁହଁରେ, ଶୂନ୍ୟ ମନରେ ଆସିଛନ୍ତି । ବାସି ମୁଡ଼ି ପରି ଖୋଳଣା ଅଛି । ଭିତରୁ ପବନ ଟିକକ ଚାଲି ଯାଇଛି । ସେ ଏବେ ଠିଆ ହୋଇ ପଚାରୁଛନ୍ତି ତାଙ୍କ କଥା— ତାଙ୍କଠାରେ ଦାଶବାବୁଙ୍କର କିଛି ଆଶା ଅଛି କି ନାହିଁ ।

କି ଉତ୍ତର ଦେବେ ? ତାଙ୍କୁ ଦିନେ ଦେଖିଲେ ମନରେ ଉତ୍ସାହ ଆସୁଥିଲା । ତାଙ୍କ କଥା ମନେ ରଖିବାକୁ, ତାଙ୍କୁ ବଡ଼ କରିବାକୁ ଭାରି ଆଗ୍ରହ ଥିଲା ।

ସେ ତ ବହୁତ ଦିନ ତଳର କଥା । ଗଲା କଥାଟା ଅଜି ସ୍ମୃତି । ସ୍ମୃତିକୁ ପୂଜା କରି ହୁଏ, ମନେ ରଖି ହୁଏ । କିନ୍ତୁ ସ୍ମୃତିର ଆଉ କ'ଣ ମୂଲ୍ୟ ଅଛି ଏଇ କାରବାରି, ବେଉସାଦାରି ଦୁନିଆରେ ?

ସେ ଦିନର ପଦ୍ମଲ ବାବୁ, ଗଲା ଦିନର ପ୍ରହ୍ଲାଦ ବାବୁଙ୍କର ଗୋଟିଏ ଜୀର୍ଣ୍ଣ ଛବି । ରେଖା ଅଛି, ରୂପ ନାହିଁ । ଦେହ ଅଛି, କିନ୍ତୁ ସେଥିରେ ପ୍ରାଣଶକ୍ତି ଊଣା ହୋଇ ଯାଇଛି ।

ଉଭୟେ ଚାହିଁଥିଲେ ପରସ୍ପରକୁ ।

---

ବ୍ରହ୍ମପୁର : ଓଡ଼ିଶା ପ୍ରିଣ୍ଟିଙ୍ଗ୍ ଓ୍ୱାର୍କ୍ସ୍‌ରେ ଶ୍ରୀ ହାଡ଼ୁ ସାହୁଗୁରୁଙ୍କ ଦ୍ୱାରା ମୁଦ୍ରିତ, ୧୯୬୭

Digitized by srujanika@gmail.com